# ଶ୍ରୀ ଚରଣ ସୁଧାନିଧି

## ରାଜା ଗୋବିନ୍ଦ ଭଂଜ

ସଂପାଦକ
ଡକ୍ଟର୍ ରଘୁନାଥ ମହାପାତ୍ର



ଭଂଜ ପ୍ରକାଶନୀ ଟ୍ରଷ୍ଟ, କେନ୍ଦୁଝରଗଡ଼

# ଶ୍ରୀ ଚରଣ ସୁଧାନିଧି

କେନ୍ଦୁଝରାଧୀଶ୍ୱର

ରାଜା ଗୋବିନ୍ଦ ଭଞ୍ଜ

ସଂପାଦକ

ଡକ୍ଟର ରଘୁନାଥ ମହାପାତ୍ର

ପ୍ରକାଶକ

ଭଞ୍ଜ ପ୍ରକାଶନୀ ଟ୍ରଷ୍ଟ

କେନ୍ଦୁଝରଗଡ଼, ଓଡ଼ିଶା

ଭଂଜ ପ୍ରକାଶନୀ ଗ୍ରନ୍ଥମାଳା—୧ : "ଶ୍ରୀ ଚରଣ ସୁଧାନିଧି"

©ପ୍ରକାଶକ : ଭଂଜ ପ୍ରକାଶନୀ ଟ୍ରଷ୍ଟ C/o ଶ୍ରୀ ଲକ୍ଷ୍ମୀନାରାୟଣ ଭଂଜ ଦେବ
କେନ୍ଦୁଝରଗଡ଼, ଓଡ଼ିଶା ୭୫୮୦୦୧

ସଂପାଦକ : ଡଃ ରଘୁନାଥ ମହାପାତ୍ର,
ଏମ୍. ଏ., ଚିତ୍ରକଳା ଡିପ୍ଲୋମା, ପିଏଚ. ଡି.
ଆନନ୍ଦପୁର, ଜିଲ୍ଲା : କେନ୍ଦୁଝର, ଓଡ଼ିଶା ୭୫୮୦୨୧
--------
ଅଧ୍ୟାପକ, ହିନ୍ଦୀ ବିଭାଗ, ଖଲ୍ଲିକୋଟ ମହାବିଦ୍ୟାଳୟ,
ବ୍ରହ୍ମପୁର, (ଗଂଜାମ), ଓଡ଼ିଶା ୭୬୦୦୦୧

ପ୍ରଚ୍ଛଦ ଶିଳ୍ପୀ : ଡଃ ରଘୁନାଥ ମହାପାତ୍ର

ପ୍ରଥମ ସଂସ୍କରଣ : ୧୦୦୦

ପ୍ରଥମ ପ୍ରକାଶ : ୧୯୭୯

ମୁଦ୍ରାକର : ଶ୍ରୀମତୀ ଶାନ୍ତିଲତା ସାହୁ, ସିଦ୍ଧବୀର ପ୍ରେସ
ଗୋସାଇଁନୁଆଁ ଗ୍ରାମ, ବ୍ରହ୍ମପୁର (ଗଂଜାମ) ୭୬୦୦୦୩

ମୂଲ୍ୟ : ଦଶ ଟଙ୍କା
ବନ୍ଧେଇ : ବାର ଟଙ୍କା

---

भंज प्रकाशनी ग्रंथमाला—१ : श्री चरण सुधानिधि

©प्रकाशक : भंज प्रकाशनी ट्रष्ट C/o श्री लक्ष्मीनारायण भंज देव
केन्दुझरगड़, ओड़िशा, ७५८००१

सम्पादक : डॉ० रघुनाथ महापात्र,
एम्० ए०, चित्रकला डिप्लोमा, पी-एच० डी०
आनन्दपुर, जिला : केन्दुझर, ओड़िशा ७५८०२१
--------
प्राध्यापक, हिन्दी विभाग, खल्लिकोट महाविद्यालय
ब्रह्मपुर, (गंजाम), ओड़िशा ७६०००१

मुखपृष्ठ चित्रण : डॉ० रघुनाथ महापात्र

प्रथम संस्करण : १०००

प्रथम प्रकाश : १९७९

मुद्रक : श्रीमती शान्तिलता साहु, सिद्धवीर प्रेस,
गोसाइँनुआँ ग्राम, ब्रह्मपुर (गंजाम) ७६०००३
मूल्य : सादा दस रुपये
सजिल्द : बारह रुपये

# ଶ୍ରୀ ଚରଣ ସୁଧାନିଧି

# 'ଭଞ୍ଜ ପ୍ରକାଶନୀ ଟ୍ରଷ୍ଟ'—ଲକ୍ଷ୍ୟ ଓ ଆଦର୍ଶ

'ଭଞ୍ଜ ପ୍ରକାଶନୀ ଟ୍ରଷ୍ଟ'ର ସ୍ଥାପନା ଦ୍ୱାରା ମୁଁ ମୋ ପୂର୍ବପୁରୁଷ ଓ କେନ୍ଦୁଝର ଜିଲ୍ଲାର ଅନ୍ୟ ଲେଖକ ମାନଙ୍କର ଓଡ଼ିଆ ସାହିତ୍ୟକୁ ଅବଦାନର ପ୍ରକାଶନ ପାଇଁ କାହିଁତ ଚେଷ୍ଟା କରୁଛି । ଏହି କାର୍ଯ୍ୟରେ କେନ୍ଦୁଝରର ଜନସାଧାରଣଙ୍କ ସହଯୋଗ ମଧ୍ୟ ମୁଁ କାମନା କରେ । ଟ୍ରଷ୍ଟର 'ବୋର୍ଡ' ମୋ ବଂଶରୁ ମୋ ପତ୍ନୀ ଶ୍ରୀମତୀ ପ୍ରେମଲତିକା ଭଞ୍ଜଦେବ, ମୋର ପୁତ୍ର ଶ୍ରୀମାନ ଅନନ୍ତନାରାୟଣ ଭଞ୍ଜଦେବ, ତଥା ସାହିତ୍ୟାନୁରାଗୀ ଏବଂ କେନ୍ଦୁଝରର ଇତିହାସ ତଥ୍ୟ ସଂଗ୍ରହ କରୁଥିବା ଏମିତି ଦୁଇଜଣ କେନ୍ଦୁଝରର ବାସିନ୍ଦା ଡ଼ଃ ରଘୁନାଥ ମହାପାତ୍ର ଓ ଶ୍ରୀ ବଂଶୀଧର ମିଶ୍ରଙ୍କୁ ନେଇ ଗଠିତ ହୋଇଛି ।

ଟ୍ରଷ୍ଟର କାର୍ଯ୍ୟଯୋଜନା କେନ୍ଦୁଝର ରାଜବଂଶରୁ ଆରମ୍ଭ କରାଯାଉଥିବାରୁ କେହି କେହି ଆପତ୍ତି କରିପାରନ୍ତି । କିନ୍ତୁ ଏଥିରେ ସଂକୀର୍ଣ୍ଣତା ନାହିଁ । ମୋ ମତରେ 'ବଦାନ୍ୟତା ନିଜ ଘରୁ ଆରମ୍ଭ କରିବା ଉଚିତ' । କେନ୍ଦୁଝର ରାଜବଂଶ ମଧ୍ୟକାଳୀନ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧିରେ ଯେଉଁ ସହଯୋଗ କରିଥିଲା, ତାହା ଅଦ୍ୟାବଧି ସୁଧୀ ପାଠକ ମାନଙ୍କ

ଦୃଷ୍ଟିପଥାରୂଢ଼ ହୋଇ ପାରନାହିଁ । ଅତୀତରେ 'କେନ୍ଦୁଝର ଗ୍ରନ୍ଥମାଳାରେ' ଛଅଟି ରଚନାର ପ୍ରକାଶନ କରାଯାଇଥିଲା । ସେଥିପାଇଁ ସେ ସବୁ ଗ୍ରନ୍ଥକୁ ପ୍ରଥମେ ପ୍ରକାଶ କରି ପରେ ଅନ୍ୟାନ୍ୟ ଗ୍ରନ୍ଥ ସବୁକୁ ପ୍ରକାଶ କରାଯାଇ ପାରିବ ବୋଲି ଆଶା କରେ । ଏହି କାର୍ଯ୍ୟଦ୍ୱାରା କେନ୍ଦୁଝରର ନିବାସୀମାନଙ୍କ ପ୍ରତି ମୁଁ କୃତଜ୍ଞତା ଜ୍ଞାପନ କରୁଛି, ଯେଉଁମାନଙ୍କ ସ୍ନେହ ଓ ଶ୍ରଦ୍ଧା ମୁଁ ପ୍ରଚୁର ଓ ସତତ ଭାବେ ପାଇଛି । ଏହି ଟ୍ରଷ୍ଟ ପକ୍ଷରୁ ପରବର୍ତ୍ତୀ ପର୍ଯ୍ୟାୟରେ କେନ୍ଦୁଝରର ଉତ୍କୃଷ୍ଟ ସାହିତ୍ୟ, ଇତିହାସ ଓ ଅନ୍ୟାନ୍ୟ ଗବେଷଣାତ୍ମକ ରଚନା ମାନ ପ୍ରକାଶିତ କରାଯିବ ।

ଭଞ୍ଜ ପ୍ରକାଶନୀ ଗ୍ରନ୍ଥମାଳାର ପ୍ରଥମ ପ୍ରକାଶନ ରାଜା ଗୋବିନ୍ଦ ଭଞ୍ଜଙ୍କ ଦ୍ୱାରା ରଚିତ 'ଶ୍ରୀଚରଣ ସୁଧାନିଧି'ର ସମ୍ପାଦନା ଭାର ଗ୍ରହଣ କରିଥିବାରୁ ମୁଁ ଡକ୍ଟର ରଘୁନାଥ ମହାପାତ୍ରଙ୍କ ଠାରେ ଋଣୀ ।

ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ରିଡ଼ର ଡ଼କ୍ଟର କୃଷ୍ଣଚରଣ ସାହୁଙ୍କ ଠାରେ ମୁଁ କେତେ ଯେ କୃତଜ୍ଞ ପ୍ରକାଶ କରି ହେବ ନାହିଁ, ଯିଏ ଶ୍ରୀଚରଣ ସୁଧାନିଧିର 'ଅଭିମତ' ଲେଖି ଏହି ରଚନାର ଶ୍ରୀବୃଦ୍ଧି କରିଛନ୍ତି ।

**ଲକ୍ଷ୍ମୀନାରାୟଣ ଭଞ୍ଜଦେବ**
**ସଭାପତି**
**ଭଞ୍ଜ ପ୍ରକାଶନୀ ଟ୍ରଷ୍ଟ, କେନ୍ଦୁଝରଗଡ଼**

**ପଞ୍ଚୁ ପୂର୍ଣ୍ଣିମା**
**ମାର୍ଗଶିର ୧୨ ଦିନ**
**ସୋମବାର**
**୩-୧୨-୧୯୭୯**

# ଅଭିମତ

ବିଦ୍ୟାନୁରାଗୀ କେନ୍ଦୁଝରର ଛୋଟରାୟ ଶ୍ରୀ ଲକ୍ଷ୍ମୀନାରାୟଣ ଭଞ୍ଜଦେବଙ୍କ ଆନୁକୂଲ୍ୟରେ ପ୍ରତିଷ୍ଠିତ ଭଞ୍ଜ ପ୍ରକାଶନୀ ଟ୍ରଷ୍ଟ ପକ୍ଷରୁ କେତେକ ପ୍ରାଚୀନ ଗ୍ରନ୍ଥର ସଂପାଦନା ଓ ମୁଦ୍ରଣ କରାଯାଉଥିବା କଥା ସମସ୍ତଙ୍କ ପାଇଁ ଏକ ଆନନ୍ଦର ବିଷୟ । ଅତୀତରେ ଏହିପରି ପ୍ରଶଂସନୀୟ ଉଦ୍ୟମ 'କେନ୍ଦୁଝର ଗ୍ରନ୍ଥମାଳା' ଦ୍ୱାରା କରା ହୋଇଥିଲା ଏବଂ ସେଥିରେ ମଧ୍ୟ ଶ୍ରୀ ଛୋଟରାୟଙ୍କ ପ୍ରେରଣା ଥିଲା ।

ବର୍ତ୍ତମାନ ଭଞ୍ଜ ପ୍ରକାଶନୀ ଟ୍ରଷ୍ଟ ପକ୍ଷରୁ ଗୋବିନ୍ଦ ଭଞ୍ଜଙ୍କ 'ଶ୍ରୀଚରଣ ସୁଧାନିଧି' ଡକ୍ଟର ରଘୁନାଥ ମହାପାତ୍ରଙ୍କ ଦ୍ୱାରା ସମ୍ପାଦିତ ହୋଇ ପ୍ରଥମେ ପ୍ରକାଶ ପାଉଛି । ଭଗବାନଙ୍କର ଚରଣ ସେବାକୁ ପ୍ରାଧାନ୍ୟ ଦେଇ ଷୋଡ଼ଶ ଶତାବ୍ଦୀରେ ବହୁ ଗ୍ରନ୍ଥ ରଚିତ ହୋଇଥିଲା । ବୌଦ୍ଧମାନଙ୍କ ପରି ଓଡ଼ିଆ କବିମାନେ କହିବାକୁ ଲାଗିଲେ ବ୍ରାହ୍ମଣମାନେ ଯେବେ ବ୍ରହ୍ମାଙ୍କ ମୁଖରୁ ଜାତ ହୋଇଥିଲେ, ସେ ଦିନ ଆଜି ଆଉ ନାହିଁ । ଆଜି ସବୁ ଜାତିପରି ବ୍ରାହ୍ମଣମାନେ ମଧ୍ୟ ମାତା ଗର୍ଭରୁ ଜାତ ହେଉଛନ୍ତି । ଅନ୍ୟ ପକ୍ଷରେ ଶୂଦ୍ରମାନେ ଭଗବାନଙ୍କ ପାଦରୁ

ଜାତ ହୋଇଥିବାରୁ ସେମାନେ ଶ୍ରେଷ୍ଠ ଜାତିରେ ପରିଗଣିତ ହେବା ଉଚିତ । ଏହି ମନୋବୃତ୍ତିରୁ ସେ ଯୁଗର ବଳରାମ, ଯଶୋବନ୍ତ, ଅଚ୍ୟୁତ ପ୍ରଭୃତି ପ୍ରସିଦ୍ଧ କବିମାନେ ଭଗବାନଙ୍କ ପାଦ ମହିମା ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ନିଜକୁ ଶୁଦ୍ର କହୁଥିଲେ । ଗୋବିନ୍ଦ ଭଞ୍ଜଙ୍କ 'ଶ୍ରୀଚରଣ ସୁଧାନିଧି'ରେ ଏହି ପରଂପରାର ପରୋକ୍ଷ ପ୍ରଭାବ ଲକ୍ଷ୍ୟ କରାଯାଇପାରେ । ପରବର୍ତ୍ତୀ ଯୁଗରେ 'ଜଗନ୍ନାଥ ଶିଷ୍ୟ' ଗୁରୁ ଜଗନ୍ନାଥ ଦାସଙ୍କ ଜୀବନୀକୁ 'ପଦ୍ମପାଦ ସୁଧାନିଧି' ନାମ ଦେଇ ଏହି ପରଂପରାକୁ ଉଜ୍ଜୀବିତ ରଖିଛନ୍ତି ।

ସାତଟି ପୋଥିର ପାଠକୁ ନେଇ ବର୍ତ୍ତମାନ ଡ଼କ୍ଟର ରଘୁନାଥ ମହାପାତ୍ରଙ୍କ ଦ୍ୱାରା ସମ୍ପାଦିତ 'ଶ୍ରୀଚରଣ ସୁଧାନିଧି'ର ପାଠ ନିଶ୍ଚିତ ଭାବରେ ଶୁଦ୍ଧ ଓ ତାଙ୍କର ଆଲୋଚନାକୁ ବିଶ୍ୱସ୍ତତା ପ୍ରଦାନ କରିଛି । ଓଡ଼ିଶାରେ ଓଡ଼ିଆ ଗ୍ରନ୍ଥମାନଙ୍କର ସମ୍ପାଦନାରେ ଯେଉଁମାନେ ନୂଆ ଓ ସମ୍ପାଦନ କଳାର ଅନଭିଜ୍ଞତା ଲକ୍ଷିତ ହେଉଛି ତାହାକୁ ସୁଧାରିବାରେ ଡ଼କ୍ଟର ମହାପାତ୍ରଙ୍କ ପରି ଯେଉଁମାନେ ଏହିମାନେ ଅଭିନନ୍ଦନୀୟ ପଦକ୍ଷେପ ଗ୍ରହଣ କରୁଛନ୍ତି, ସେମାନେ ସର୍ବଥା ପ୍ରଶଂସନୀୟ । ଆଶାକରେ ଓଡ଼ିଶାର ସୁଧୀଜନ ଏହାକୁ ଆଗ୍ରହର ସହ ଅନୁଶୀଳନ କରିବେ ।

ଡ଼ଃ କୃଷ୍ଣଚରଣ ସାହୁ
ରିଡର, ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର
୭୫୧୦୦୪

ସୋମବାର
୩-୧୨-୭୯

# ମୁଖବନ୍ଧ

## ଉପକ୍ରମ

(ପୋଥି ଓ ସେ ଗୁଡ଼ିକର ଶୁଦ୍ଧ ପାଠ)

୧୯୭୮ ଅକ୍ଟୋବରରେ ମୁଁ କେନ୍ଦୁଝର ଯାଇଥିବା ସମୟରେ ଶ୍ରେଷ୍ଠରାଜ୍ୟ ଶ୍ରୀମାନ୍ ଲକ୍ଷ୍ମୀନାରାୟଣ ଭଞ୍ଜ ଦେବ ୬ରାଜା ଗୋବିନ୍ଦ ଭଞ୍ଜଙ୍କ ରଚିତ 'ଶ୍ରୀଚରଣ ସୁଧାନିଧି'ର ପ୍ରକାଶନ ଇଚ୍ଛା ବ୍ୟକ୍ତ କଲେ। ଅରୁଣୋଦୟ ପ୍ରେସରୁ ୧୯୨୫ରେ ପ୍ରକାଶିତ ହୋଇଥିବା ପୁସ୍ତକର ଅବିକଳ ପାଠକୁ ପୁନଃ ପ୍ରକାଶିତ କରିବା ଅପେକ୍ଷା ସେଟିକୁ ଅନ୍ୟ ଉପଲବ୍ଧ ତାଳପତ୍ର ପୋଥି ମାନଙ୍କ ସାଙ୍ଗରେ ତୁଳନା କରି ଏକ ଶୁଦ୍ଧ-ପାଠର ପ୍ରକାଶନର ଗୁରୁତ୍ୱ ମୁଁ ଉପଲବ୍ଧି କଲି। ସେ ରାଜି ହେଲେ ଓ ତାଙ୍କ ପାଖରେ ଥିବା ଗୋଟିଏ ତାଳପତ୍ର ପୋଥି ମଧ୍ୟ ମୋତେ ଦେଲେ। କାଳବିଳମ୍ବ ନ କରି ମୁଁ ପ୍ରକାଶିତ ପୁସ୍ତକରୁ ପାଠ ତୁଳନା କରିବା ଯୋଗ୍ୟ ନକଲଟିଏ ତିଆରି କଲି। ଏଥିରେ ଉତାରିବା କାମରେ ମୋତେ ପରେ ବୈତରଣୀ ପତ୍ରିକାର ସମ୍ପାଦକ ଶ୍ରୀ ନବକିଶୋର ମହାନ୍ତି ସାହାଯ୍ୟ କଲେ। ପାଞ୍ଚ ଦିନ ଭିତରେ ଭିତରେ ମୁଁ ସେଠାରେ ଥିବା ପୋଥି ସାଙ୍ଗରେ ତୁଳନା କାମ ପୂର୍ଣ୍ଣ କଲି।

ଏହାପରେ ୨୦-୧୦-୭୮ ଠାରୁ ୨୪-୧୦-୭୮ ସୁଦ୍ଧା ଭୁବନେଶ୍ୱର-ଠାରେ ରହି, ଉତ୍କଳ ବିଶ୍ୱବିଦ୍ୟାଳୟ ପୋଥି ବିଭାଗରେ ଥିବା ୬ଆର୍ତ୍ତ-ବଲ୍ଲଭ ମହାନ୍ତିଙ୍କ ଗାଦି ପୋଥିର ନକଲ (c. y. 146) ଓ ଅନ୍ୟ ଏକ ପୋଥି ଏବଂ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଥିବା ତିନୋଟି ପୋଥି ମାନଙ୍କ ସାଙ୍ଗରେ ଉକ୍ତ ପାଠର ତୁଳନା ମୁଁ ଶେଷ କଲି। ଏହି ସାତ ଗୋଟି ପାଠ ଉପରେ ନିର୍ଭର କରି ଏହି ପୁସ୍ତକର ଶୁଦ୍ଧ ପାଠ ନିର୍ଣ୍ଣୟ କରିବା ପାଇଁ ଚେଷ୍ଟା କରାଯାଇଛି।

## ଶ୍ରୀଚରଣ ସୁଧାନିଧି

| କ୍ରମ | ବିବରଣୀ | ମୋଟ ପଦସଂଖ୍ୟା | ପୋଥିର ଅବସ୍ଥା, ସ୍ଥାନ ଓ ସନ୍ଦର୍ଭ |
|---|---|---|---|
| ୧ | ପ୍ରକାଶିତ (୧୯୨୫) ଅରୁଣୋଦୟ ପ୍ରେସ, କଟକ | ୮୦୬ | (ପ୍ରକାଶିତ ପୁସ୍ତକ) |
| ୨ | ତାଳପତ୍ର | ୬୦୫ | ଉଲ : ଶ୍ରୀ ଲକ୍ଷ୍ମୀନାରାୟଣ ଭଞ୍ଜ ଦେବ, (କେନ୍ଦୁଝର)ଙ୍କ ପୁସ୍ତକାଳୟ |
| ୩ | ତାଳପତ୍ରରୁ କାଗଜ ନକଲ | ୨୪୦ | ଉଲ : ଉତ୍କଳ ବିଶ୍ୱବିଦ୍ୟାଳୟ ପୋଥି ବିଭାଗ (c. y. 146) |
| ୪ | ତାଳପତ୍ର | ୨୪୨ | ଉଲ : ଉତ୍କଳ ବିଶ୍ୱବିଦ୍ୟାଳୟ ପୋଥି ବିଭାଗ (O. L. 495) |
| ୫ | ତାଳପତ୍ର (୧୩ ପୃଷ୍ଠା | ୩୪୬ | ଉଲ : ଓଡ଼ିଶା ରାଜ୍ୟ ସଂଗ୍ରହାଳୟ (O. L. 102) |
| ୬ | ତାଳପତ୍ର (୮୬ ପୃଷ୍ଠା) | ୬୦୫ | ପୋଲଖିଆ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ (O. L. 103) |
| ୭ | ତାଳପତ୍ର (୧୧୩ ପୃଷ୍ଠା) | ୮୨୯ | ଉଲ : ଓଡ଼ିଶା ରାଜ୍ୟ ସଂଗ୍ରହାଳୟ (O. L. 1023) |

ଉକ୍ତ ପ୍ରକାଶିତ ପୁସ୍ତକ ଓ ପୋଥି ଗୁଡ଼ିକ ଦୁଇ ପ୍ରକାରର ଅଟେ (କ) ୨୪୦ ଠାରୁ ୩୪୬ ସୁଦ୍ଧା ପଦ ଥିବା ପୋଥି ଓ (ଖ) ୬୫୦ ଠାରୁ ୮୨୯ ସୁଦ୍ଧା ପଦଥିବା ପୋଥି । ଦ୍ୱିତୀୟ ପ୍ରକାରରେ ଉକ୍ତ ପ୍ରଥମ ପ୍ରକାରର ପୋଥି ମାନଙ୍କର ପଦ ଗୁଡ଼ିକ ସରିଲା ପରେ ବିସ୍ତାର ପାଇଛି । ବିଷୟ ବସ୍ତୁ ଦୃଷ୍ଟିରୁ ଏହି ପରବର୍ତ୍ତୀ ପଦ ଗୁଡ଼ିକରେ କବିର ମନୋବୃତ୍ତି ହଠଯୋଗ ପରକ କିମ୍ବା କଳା ପରେ ନିବଦ୍ଧ । ଉପଲବ୍ଧ ପୋଥିରୁ ଗୁଡ଼ିଏ ପୋଥିରେ ଏହି ପରବର୍ତ୍ତୀ ପଦ ଗୁଡ଼ିକ ଥିବାରୁ, ଏ ଗୁଡ଼ିକ ମୂଳପାଠ ହୋଇ ଥିବ ବୋଲି ବିଶ୍ୱାସ ଜନ୍ମିଲା । କିନ୍ତୁ ବିଷୟ ଦୃଷ୍ଟିରୁ ବିଭାଜକ ରେଖାଟିଏ

ଛାଣିବାକୁ ହେଲା । କବିର ଶ୍ରୀ ଚରଣରେ ଏକାନ୍ତ ଭକ୍ତି ପରକ ଭାବ ଓ ଭକ୍ତଙ୍କ ଉଦାହରଣ ଗୁଡ଼ିକର ଯଦିଓ ଦ୍ୱିତୀୟ ଭାଗରେ ମଧ୍ୟ ଅଭାବ ନାହିଁ, କିନ୍ତୁ ପ୍ରଥମ ଭାଗର ଭାବ ପ୍ରବଣତା ଦ୍ୱିତୀୟ ଭାଗରେ 'ମାଣିକୋଠ' କେନ୍ଦ୍ରରେ ପର୍ଯ୍ୟବେକ୍ଷିତ ହୋଇଛି ।

ଏଣୁ ଏହା ଚିନ୍ତା କରି ଯାଇପାରେ ଯେ କବିର ଏହା ନିଜର ଲେଖା ନୁହେଁ ଅନ୍ୟ କବି ଲେଖି ଯୋଡ଼ିଛି ବା ଦ୍ୱିତୀୟରେ କବି 'ମିଶ୍ର-ସମ୍ପ୍ରଦାୟ' ଭୁକ୍ତ ଅଟନ୍ତି । ସେ ମିଶ୍ର ସମ୍ପ୍ରଦାୟ ଭୁକ୍ତ ବା ସହଜିଆ ହୋଇ ଥିବା କଥା ତାଙ୍କର 'ରାମଗାଥା' ଓ 'ଭକ୍ତି ବିନୋଦ' କାବ୍ୟ ମାନଙ୍କରୁ ମଧ୍ୟ ସମର୍ଥିତ ହୁଏ ।

ଯଦିଓ ଏହି ପୁସ୍ତକଟି ୧୯୨୫ରେ ଅରୁଣୋଦୟ ପ୍ରେସରେ ମୁଦ୍ରିତ ହୋଇ ପ୍ରକାଶିତ ହୋଇଥିଲା ଓ ଏହାର ପରିଚୟ ହଣ୍ଟର, ମହତାବ ଓ ବିନାୟକ ମିଶ୍ର ଆଦି ସାହିତ୍ୟର ଇତିହାସରେ ଦେଇଥିଲେ; କିନ୍ତୁ ୰ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଏହାର ପାଠ ପାଇ ନ ପାରିବା କଥା ତାଙ୍କ ଦ୍ୱାରା ସମ୍ପାଦିତ ପୁସ୍ତକ 'ଭକ୍ତି-ବିନୋଦର' ଉପୋଦ୍ଘାତରେ ଲେଖିଛନ୍ତି । ମୁଁ କେନ୍ଦୁଝରରେ ଯେଉଁ ପୋଥିଟି ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ଭଞ୍ଜ ଦେବଙ୍କଠାରୁ ପାଇଲି, ସେ ବିଷୟରେ ପଚାରିଲାରୁ ଶ୍ରୀ ଭଞ୍ଜ ଦେବ କହିଲେ ସମ୍ଭବତଃ ଉକ୍ତ ପୋଥିଟି ତାଙ୍କ ପାଖରେ ମୋର ଅଜା ଓ ତାଙ୍କର ଦୀକ୍ଷା ଗୁରୁ ୰ପଣ୍ଡିତ କରୁଣାକର ଭଞ୍ଜମିଶ୍ରଙ୍କ ପ୍ରୟାଣ ପରେ ତାଙ୍କର ବହି ଓ ପୋଥି ସାଙ୍ଗରେ ଆସିଅଛି । ସେଥି ପାଇଁ ବୋଧହୁଏ ୰ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଏହାର ପାଠଟି ପାଇ ପାରି ନ ଥିଲେ ।

ଦୁଃଖର ବିଷୟ ଯେ ଉକ୍ତ ସବୁ ପୋଥି ଗୁଡ଼ିକରେ ଲିପିକାର, ଲିପିକରଣ ସ୍ଥାନ, କାଳ ଆଦିର କୌଣସି ସୂଚନା ମିଳୁନାହିଁ । ସେଥିପାଇଁ କେଉଁ ପୋଥିଟି ପୁରୁଣା, କେଉଁଟି ନୂଆ ବା ପରବର୍ତ୍ତୀ ନିର୍ଣ୍ଣୟ କରିବା କଠିନ । କେବଳ ପୋଥିରେ ଜମି ରହିଥିବା ମଇଳା ଓ ରଙ୍ଗ ଆଦିକୁ ଦେଖି ଏହା ନିର୍ଣ୍ଣୟ କରଯାଇ ନ ପାରେ । ଅତଏବ ସବୁ ପୋଥି ଗୁଡ଼ିକ ପାଠ ପାଇଁ ଗ୍ରହଣ କରିବାକୁ ହେଲା । ପାଠାଲୋଚନର ସିଦ୍ଧାନ୍ତରେ ନୂତନ ପୋଥି ଯଦି କୌଣସି ପୁରାତନ ପୋଥିର ନକଲ ବୋଲି ଜଣା ପଡ଼ିବ,

ସେଟିକୁ ବିନା ଦ୍ୱିଧାରେ ବାଦ ଦେଇ ହେବ । କିନ୍ତୁ ଏହି କ୍ଷେତ୍ରରେ ନିର୍ଣ୍ଣୟର ଅଭାବରୁ ସବୁ ପୋଥି ଗୁଡ଼ିକୁ ପାଠ-ନିର୍ଦ୍ଧାରଣ ପାଇଁ ମାନିବାକୁ ମୁଁ ବାଧ୍ୟ ହେଲି ।

ସାମ୍ୟ ଦୃଷ୍ଟିରୁ କେନ୍ଦୁଝରରୁ ପ୍ରାପ୍ତ ଦ୍ୱିତୀୟ ତାଳପତ୍ର ପୋଥିଟି ଓଡ଼ିଶା ରାଜ୍ୟ ସଂଗ୍ରହାଳୟରୁ ପ୍ରାପ୍ତ ଷଷ୍ଠ ପୋଥି (O. L. 103) ସାଙ୍ଗରେ ପ୍ରାୟଃ ମିଶି ଯାଉଛି । ପଦ ସଂଖ୍ୟା ମଧ୍ୟ ସମାନ । ହୁଏତ କୌଣସି ସମାନ ଆଦର୍ଶ ପୋଥିରୁ ଏହି ଦୁଇଟି ନକଲ କରାଯାଇଛି ବା ଏକଟି ଦ୍ୱିତୀୟର ଆଦର୍ଶ ମଧ୍ୟ ହୋଇପାରେ । କିନ୍ତୁ ତାଳପତ୍ରର କୌଣସି ଦୋଷରୁ ବା ରକ୍ଷଣାବେକ୍ଷଣର ଅଭାବରୁ O. L. 1 ପୋଥିଟିକୁ ପୋକ ଖାଇ ଗଲେଣି । ଏହା ସୁପାଠ୍ୟ ମଧ୍ୟ ରହି ନାହିଁ । ସେହିପରି ରାଜ୍ୟ ସଂଗ୍ରହାଳୟର ସପ୍ତମ ପୋଥି (O. L. 1023)ଟି ଅରୁଣୋଦୟ ପ୍ରେସରୁ ୧୯୨୫ରେ ପ୍ରକାଶିତ ପୁସ୍ତକର ପାଠ ସଙ୍ଗେ ପ୍ରାୟଃ ସମାନ । ଏହି ଦୁଇଟିର ଆଦର୍ଶ ସମାନ ହୋଇଥିବ ବା ଏକାରେକର ନକଲ ମଧ୍ୟ ହୋଇପାରେ । ୨୪୦ରୁ ୩୪୬ ସୁଦ୍ଧା ପଦ ସଂଖ୍ୟକ ପୋଥିମାନଙ୍କର ପାଠ ମଧ୍ୟ ପ୍ରାୟଃ ସମାନ ଓ ପ୍ରଥମରୁ ଏହି ସଂଖ୍ୟକ ପଦ ସୁଦ୍ଧା ସବୁ ପୋଥି ଗୁଡ଼ିକର ପଦ ଓ ପାଠ ପ୍ରାୟଃ ମିଶି ଯାଉଛି । ଶବ୍ଦଗତ ପାଠାନ୍ତର ଯେଉଁ ଯେଉଁ ସ୍ଥାନମାନଙ୍କରେ ଅଛି, ତାହା ପାଦ ଟିପ୍ପଣିରେ ସୂଚିତ ଦିଆ ଯାଇଛି । ଶବ୍ଦର ରୂପ ଗ୍ରହଣ କଲା ବେଳେ କବିର କାଳ ଅନୁସାରେ ଭାଷା ଓ ଶବ୍ଦକୁ ଗ୍ରହଣ କରାଯାଇଛି । ଏ ବିଷୟରେ ପରେ ବିସ୍ତୃତ ଆଲୋଚନା କରା ଯିବ । ସଂଶୋଧନ କରିବାର ଅଧିକାର ସମ୍ପାଦକର ନାହିଁ । ମୂଳ ଲକ୍ଷ୍ୟ ହେଲା ଯେ କବି ଓ କାଳ ଅନୁସାରେ ପାଠଟି ବିଶୁଦ୍ଧ ହେଉ ।

ଆଉ ଗୋଟିଏ କଥା ସମାନ ଭାବରେ ଲକ୍ଷ୍ୟ କରାଯାଇ ପାରେ ଯେ, ପ୍ରାୟଃ ସବୁ ପୋଥି ଗୁଡ଼ିକରେ ଶେଷ କେତେ ଗୁଡ଼ିଏ ପଦ ପ୍ରକ୍ଷେପକ ଲିପିକାରର ନଜର ! ଏହି ମିଶ୍ରଣରେ ସେମାନେ ଦ୍ୱିଧା କରି ନାହାନ୍ତି । ପାଠାନ୍ତର ନିର୍ଣ୍ଣୟ କଲା ବେଳେ ସେ ଗୁଡ଼ିକ ସୂଚିତ ହୋଇଛି ଓ ପରିଶିଷ୍ଟରେ ସନ୍ନିବେଶିତ କରାଯାଇଛି ।

# ୧ କବିଙ୍କ ଜୀବନୀ

ସାହିତ୍ୟର ଐତିହାସିକମାନଙ୍କ ଭିତରେ ରାଜା ଗୋବିନ୍ଦ ଭଞ୍ଜଙ୍କର ସମୟ ବିଷୟରେ ମତ ଭିନ୍ନତା ପରିଲକ୍ଷିତ ହୁଏ । 'କେନ୍ଦୁଝର'(ଇତିହାସ) ବହିର ଲେଖକ କ୍ଷେତ୍ର ମୋହନ ମିଶ୍ର ତାଙ୍କର ରାଜ୍ୟକାଳ ୧୪୮୦-୧୫୩୪ ଖ୍ରୀ: ବୋଲି ଠିକ କରିଛନ୍ତି । ୰ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ 'ଭକ୍ତ ବିନୋଦ' (ପ୍ରକାଶନ କାଳ ୧୯୫୭) ର ଭୂମିକାରେ ଗୋବିନ୍ଦ ଭଞ୍ଜଙ୍କ ଜନ୍ମ ସମୟ ୧୪୪୯ ବା ୧୪୫୦ ଖ୍ରୀ: ନିର୍ଦ୍ଧାରଣ କରିଛନ୍ତି । ତାଙ୍କ ମତରେ ଏହାଙ୍କ ଆୟୁ ୮୪ ବର୍ଷ । ପଣ୍ଡିତ ବିନାୟକ ମିଶ୍ରଙ୍କ ଇତିହାସରେ ଏହାଙ୍କୁ ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଅନୁମାନ କରାଯାଇଛି[1] । ଉତ୍କଳ ବିଶ୍ୱବିଦ୍ୟାଳୟ ପୋଥିବିଭାଗରେ ଥିବା ୰ଡ଼ଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ପୋଥିଗାଦିରୁ ପ୍ରାପ୍ତ ପୋଥିର ନକଲ (c. y. 146) ର ନୋଟରେ କବିଙ୍କ ସମୟ, ସ୍ଥାନ, ଆଦି ବିଷୟରେ ସନ୍ଦେହ ବ୍ୟକ୍ତ କରାଯାଇଛି ।[2] ଡବ୍ଲ୍ୟୁ ହଣ୍ଟର ସାହେବଙ୍କ ଓଡ଼ିଶା ଇତିହାସରେ ଏହି କବିଙ୍କୁ ବୈଷ୍ଣବଧର୍ମାବଲମ୍ବୀ କିନ୍ତୁ ପ୍ରମାଦବଶତଃ ବ୍ରାହ୍ମଣ ବୋଲି କୁହାଯାଇଛି । ଏଥିରେ କବିଙ୍କ ସମୟ ହଣ୍ଟର ସାହେବଙ୍କ ଇତିହାସ ଲେଖା ସମୟ (୧୮୭୨) ଠାରୁ ୨୬୦ ବର୍ଷ ପୂର୍ବେ (ଅର୍ଥାତ ଖ୍ରୀ: ୧୬୧୨) ନିର୍ଣ୍ଣୟ କରାଯାଇଛି । ସେଥିରେ ଏହା ମଧ୍ୟ କୁହାଯାଇଛି ଯେ 'ଶ୍ରୀଚରଣ ସୁଧାନିଧି'ରେ ଦୁଇ ଅବତାରର ଗୁଣ ବର୍ଣ୍ଣନା କରି ହୋଇଛି ମହତାବ ତାଙ୍କ ଇତିହାସରେ ସୂଚାଇଛନ୍ତି ଯେ ଗୋବିନ୍ଦ ଭଞ୍ଜ କେନ୍ଦୁଝରର

---

୧ । କେନ୍ଦୁଝର ଛଡ଼ା ଅନ୍ୟ କୌଣସି ରାଜବଂଶାବଳୀରେ ତ୍ରିଲୋଚନ ଭଞ୍ଜଙ୍କର ଗୋବିନ୍ଦ ଭଞ୍ଜ ନାମରେ ପୁତ୍ର ଥିବାର ଜଣାଯାଏ ନାହିଁ । (ଏହାଙ୍କ ପରେ ୧୩ ପୁରୁଷ ରାଜା ହେଲେଣି) । ତେଣୁ ସେ ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଜୀବିତ ଥିବେ ବୋଲି ଅନୁମାନ କରାଯାଏ । (ଓଡ଼ିଆ ସାହିତ୍ୟର ଇତିହାସ ବିନାୟକ ମିଶ୍ର ପୃ ୮୩-୮୪)

୨ । କିନ୍ତୁ ଗୋବିନ୍ଦ ଭଞ୍ଜ କେଉଁ ସମୟର ଓ କେଉଁଠାର ଲୋକ ଓ ବୀରନାରାୟଣ ତ୍ରିଲୋଚନ ଦେବଙ୍କ ସହିତ ତାଙ୍କର କି ସମ୍ବନ୍ଧ, ତାହା ଆମ୍ଭେମାନେ ଜାଣି ପାରିଲୁ ନାହିଁ । ଗଂଜାମ ଇତିହାସରେ ଯେଉଁ ନାମ ମିଳେ ସେମାନଙ୍କୁ ପରିତ୍ୟାଗ କରାଯାଇଛି । (ହସ୍ତ ଲିଖିତ ପୋଥିର ମୁଖପୃଷ୍ଠା (C, Y. 146) ଉତ୍କଳ ବିଶ୍ୱବିଦ୍ୟାଳୟ)

ରାଜା ତ୍ରିଲୋଚନ ଭଞ୍ଜଙ୍କ ପୁତ୍ର । ଉକ୍ତ ସମସ୍ତ ଆଲୋଚକ ଗଣ 'ଶ୍ରୀଚରଣ ସୁଧାନିଧି' ତାଙ୍କ ରଚନା ବୋଲି କହିଛନ୍ତି ।

ବାବୁ ଅଜୟଚନ୍ଦ୍ର ଦାସଙ୍କ କେନ୍ଦୁଝରର ରେଭିନ୍ୟୁ ରିପୋର୍ଟରୁ ଜଣାଯାଏ ଯେ ରାଜା ଗୋବିନ୍ଦ ଭଞ୍ଜଙ୍କ ରାଜ୍ୟକାଳ ୧୬୦୩ଠାରୁ ୧୬୩୪ ଓ ସେ ତ୍ରିଲୋଚନ ଭଞ୍ଜଙ୍କ ପୁତ୍ର । ଏହି ସମୟ ହଣ୍ଟର ସାହେବଙ୍କ ଦ୍ୱାରା ସୂଚିତ ସମୟ ସଙ୍ଗେ ମେଳ ଖାଉଛି । କେଦାରନାଥ ମହାପାତ୍ର ନିଜର 'ଖୁର୍ଦ୍ଧା ଇତିହାସ'ରେ ଗୋବିନ୍ଦ ଭଞ୍ଜଙ୍କୁ ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗର କବି ଓ ଗଜପତି ପୁରୁଷୋତ୍ତମ ଦେବ (୧୬୦୦-୧୬୨୧) ଙ୍କ ସମକାଳୀନ କହିଛନ୍ତି୩ । ୰ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ 'ଭକ୍ତ ବିନୋଦ'ର ଭୂମିକାରେ ବାବୁ ଅଜୟ ଚନ୍ଦ୍ର ଦାସଙ୍କ ସେଟଲମେଣ୍ଟ ରିପୋର୍ଟ (୧୮୯୮ ଖ୍ରୀଃ), ଡ଼. ଆଇ. ଶ୍ରୀଯୁକ୍ତ କ୍ଷେତ୍ରମୋହନ ମିଶ୍ରଙ୍କର 'କେନ୍ଦୁଝର' ବହି, ଜନ-ଶ୍ରୁତି ଓ କିମ୍ବଦନ୍ତୀକୁ ଆଧାର କରି କେତେ ଟି କଥା କହିଛନ୍ତି ।

୧ । ଯେ ରାଜା ଗୋବିନ୍ଦ ଭଞ୍ଜ କାଞ୍ଚି ଯୁଦ୍ଧରେ ଯୋଗଦାନ କରିଥିଲେ । ଜଗବନ୍ଧୁ ସିଂହଙ୍କ ପ୍ରାଚୀନ ଉତ୍କଳରେ ମଧ୍ୟ ଏହା ଉଲ୍ଲେଖ ଅଛି ।

୨ । ଯେ ସେ ନିଜ ପିତା ତ୍ରିଲୋଚନ ଭଞ୍ଜଙ୍କ ଦ୍ୱାରା କୌଣସି କାରଣରୁ ବିତାଡ଼ିତ ହୋଇ ପୁରୀରେ ବାସ କରୁଥିଲେ । ସେତେବେଳେ ରାଜା ପୁରୁଷୋତ୍ତମ ଦେବ (୧୪୬୯-୧୪୯୬)ଙ୍କ ସୁନଜରରେ ପଡ଼ିଥିଲେ ଓ କାଞ୍ଚି ଯୁଦ୍ଧରେ ଜଣେ ବଶିଷ୍ଟ ସେନାପତି ଭାବରେ ଯୋଗଦାନ କରିଥିଲେ ।

୩ । ତାଙ୍କ ବୀରତ୍ୱରେ ପ୍ରସନ୍ନ ହୋଇ ରାଜା ପୁରୁଷୋତ୍ତମ ଦେବ ତାଙ୍କୁ ମହାରାଜ ଉପାଧିସହ ଲୋଓର କେନ୍ଦୁଝର 'ଆନନ୍ଦପୁର' ପୁରସ୍କାର ସ୍ୱରୂପ ପ୍ରଦାନ କରିଥିଲେ ।

୪ । ୧୪୮୦ ଖ୍ରୀଃ ରେ ତାଙ୍କ ପିତା ତ୍ରିଲୋଚନ ଭଞ୍ଜଙ୍କର ମୃତ୍ୟୁ ହେଲା । ଅତଏବ ଗୋବିନ୍ଦ ଭଞ୍ଜ କେନ୍ଦୁଝର ଆସି ସିଂହାସନାରୋହଣ କଲେ ।

---

୩ । ଖୁର୍ଦ୍ଧା ଇତିହାସ (୧୫୬୮-୧୮୧୬) କେଦାରନାଥ ମହାପାତ୍ର ପୃ ୬୬

୫ । କାଞ୍ଚି-ଯୁଦ୍ଧ ବେଳକୁ ଯଦି ଗୋବିନ୍ଦ ଭଞ୍ଜଙ୍କର ଆୟୁ ୨୫ ବର୍ଷ ହୋଇଥାଏ, ତେବେ ସେ ୧୪୪୯-୫୦ରେ ଜନ୍ମ ଗ୍ରହଣ କରିଥିବା କଥା ଗ୍ରହଣୀୟ ।

୬ । ଜନଶ୍ରୁତି କୁହେ ଯେ ଗୋବିନ୍ଦ ଭଞ୍ଜ କାଞ୍ଚିରୁ (କ) ରାମ-ଲକ୍ଷ୍ମଣଙ୍କ ବିଗ୍ରହ ଓ (ଖ) ତାରିଣୀଙ୍କୁ ବିଜୟ ଚିହ୍ନ ରୂପେ ଆଣିଥିଲେ । ରାମ, ଲକ୍ଷ୍ମଣ ଏବେ ମଧ୍ୟ ଆନନ୍ଦପୁରଠାରୁ ୮ କିଲୋମିଟର ଦୂର ବୈତରଣୀ କୂଳରେ ତାଙ୍କ ଦ୍ୱାରା ନିର୍ମିତ 'ଶ୍ରୀ ରଘୁନାଥ' ମନ୍ଦିରରେ ସ୍ଥାପିତ । ଶାସନର ନାମ ନିଜ ନାମାନୁସାରେ ବୀରଗୋବିନ୍ଦପୁର ସେ ଦେଇଥିଲେ ।

ପରେ ୧୯୩୬-୩୭ରେ ମନ୍ଦିରର ଜୀର୍ଣ୍ଣୋଦ୍ଧାର କରାଗଲା ବେଳେ ମନ୍ଦିରର ଚୂଡ଼ାରୁ କେତେକ ଢ଼ାଲ, ତରବାରି ଆୟୁଧାଦି ବାହାରି ଥିଲା । ସେତେ ବେଳର ଷ୍ଟେଟ-ମନ୍ଦିର ସମ୍ବନ୍ଧର ପରିଚାଳକ ମଧୁସୂଦନ ପଟ୍ଟନାୟକଙ୍କର ଏ ବିଷୟରେ ମତ ଯେ "ରାଜା ଗୋବିନ୍ଦ କାଞ୍ଚି ଯୁଦ୍ଧରେ ଯେଉଁ ଅସି ପ୍ରଭୃତି ବ୍ୟବହାର କରିଥିଲେ, ତାହା ସ୍ୱଗୁଣ ଶାସିତ, ଶାନ୍ତିମୟ ରାଜ୍ୟରେ ନିଷ୍ପ୍ରୟୋଜନ ଓ ଭଗବଦାରାଧନାରେ ଅନ୍ତରାୟ ପ୍ରତୀତ ହେବାରୁ ଇଷ୍ଟ ପଦରେ ତାହା ସମର୍ପଣ କରି ଆନନ୍ଦମୟୀଙ୍କ ସନ୍ଧାନରେ ଲିପ୍ତ ରହିଥିଲେ ।

୭ । ତାରିଣୀଙ୍କ ଆସ୍ଥାନ ଏବେ ମଧ୍ୟ ଘଟଗାଁରେ ଅଛି । ସେ ହେଉଛନ୍ତି କେନ୍ଦୁଝର ରାଜାମାନଙ୍କର ଇଷ୍ଟଦେବୀ । କେନ୍ଦୁଝରର ଦୁର୍ଗ ଭିତରେ ତାଙ୍କର ପ୍ରତିମୂର୍ତ୍ତି 'ତାରିଣୀ' ବିରାଜମାନା ।

୮ । ଗୋବିନ୍ଦ ଭଞ୍ଜଙ୍କ ଭକ୍ତିମତ୍ତା ଏପରିଥିଲା ଯେ ସେ ପ୍ରତିଦିନ ନିଜର ଇଷ୍ଟଦେବ ଶ୍ରୀ ରଘୁନାଥ ଓ ଇଷ୍ଟଦେବୀ ତାରିଣୀଙ୍କୁ ଦର୍ଶନ କରିବାଲାଗି କେନ୍ଦୁଝରଠାରୁ ଅଶ୍ୱ ପୃଷ୍ଠରେ ୪୫ ମାଇଲ ଯାଇ ଫେରୁଥିଲେ ।

୯ । 'ରାମଗାଥାର' ଭୂମିକାରେ କବିଙ୍କ ଭାଷାକୁ ସେ ସ୍ଥାନେ-ସ୍ଥାନେ ବ୍ୟାକରଣଦୁଷ୍ଟ ମାନିଛନ୍ତି । ସେ କହିଛନ୍ତି "ପ୍ରାୟଃ ସାଢ଼େ ଚାରି ଶହ ବର୍ଷ ତଳେ ଅର୍ଥାତ୍ ଓଡ଼ିଆ ସାହିତ୍ୟର ପୌଗଣ୍ଡ ଅବସ୍ଥାରେ ରଚିତ ଏହି କାବ୍ୟରେ ଏ ପ୍ରକାର ଅଶୁଦ୍ଧି ରହିବା ଯେ ଅତି ସ୍ୱାଭାବିକ, ଏଥିରେ କେହି ଅମତ ହେବେ ନାହିଁ ।" (ପୃ: ୩/ )

ପଣ୍ଡିତ ବିନାୟକ ମିଶ୍ରଙ୍କ ଇତିହାସରେ ଲେଖାଅଛି ଯେ ଗୋବିନ୍ଦ ଭଞ୍ଜଙ୍କୁ ନିଜେ ଚୈତନ୍ୟ ଦେବ ମନ୍ତ୍ର ଉପଦେଶ ଦେଇ ଧ୍ୟାନର ବିଧି ଶିଖାଇ ଥିଲେ । ଏହାକୁ ପ୍ରମାଣିତ କରିବାକୁ ଯାଇ ସେ ଶ୍ରୀ ଚରଣ ସୁଧାନିଧିର ଯେଉଁ ଅଂଶଟିକୁ ଉଦ୍ଧାର କରିଛନ୍ତି ସେ ଅଂଶଟି ହେଲା—

ଅବେ ପାଦ ପଦ୍ମ ସ୍ମରଣ କରନ୍ତି । ବୈଷ୍ଣବ ଦର୍ଶନ ଫଳ ସେ ଲଭନ୍ତି ॥
ଚୈତନ୍ୟାବତାରେ ପ୍ରେମଭକ୍ତି ଦେଇ । ଗୌରହରି ରୂପ ଭକତେ ଦେଖାଇ ॥
ନିତ୍ୟାନନ୍ଦ ରୂପ ଆପଣେ ପ୍ରକାଶି । ମହାମନ୍ତ୍ର ଦେଇ ଭକତକୁ ତୋଷି ॥
ଦାମୋଦର ରୂପ ଆପଣେ ହୋଇଲେ । ଅଧମ ତାରି ମହିମା ପ୍ରକାଶିଲେ ॥
ରାମାନନ୍ଦ ରୂପ ଆପଣେ ପ୍ରକାଶି । ସଙ୍କର ପ୍ରଭୁ ଗୌରଙ୍ଗ ସନ୍ନ୍ୟାସୀ ॥
ଶ୍ରୀଦାସ ପଣ୍ଡିତ ଆଦି ଭକ୍ତ ରୂପେ । ସନାତନ ରୂପେ ମହାତ୍ମା ରୂପେ ॥
ଗୋପାଳ ଭଟ୍ଟ ଆପଣେ ହରି ହେଲେ । ଏକନାଥ ରୂପ ଆପଣେ ଧଇଲେ ॥
କର୍ଣ୍ଣପୁଷ୍ପ କବିରାଜ ଶ୍ରୀ ଗୋସାଇଁ । ଶ୍ରୀଦାସ ରୂପରେ ଭକତି ଦେଖାଇ ॥
କବିରାଜ କୃଷ୍ଣ ସଂଜାତ ଅଟନ୍ତି । ଚୈତନ୍ୟ ଚରଣାମୃତ ବଖାଣନ୍ତି ॥
ଅଭୟ ପାଦ ପଦ୍ମ ଯେହୁ ଭଜିଲା । ସମସ୍ତ ପୁଣ୍ୟ ଆଶ୍ରମରେ ବସିଲା ॥

ଅରୁଣୋଦୟ ପ୍ରେସ ଦ୍ୱାରା ପ୍ରକାଶିତ ପୁସ୍ତକ ପଦ ସଂଖ୍ୟା (୨୮୧-୨୯୦)

ଏହି ଅଂଶର ଶେଷ ପଦଟିକୁହିଁ ଶ୍ରୀ ଚରଣ ସୁଧାନିଧିର ଶୁଦ୍ଧପାଠ ୨୮୬ ସଂଖ୍ୟକ ପଦ ହିସାବରେ ଗ୍ରହଣ କରାଯାଇଛି । ଉକ୍ତ ପଦ ଗୁଡ଼ିକ କେନ୍ଦୁଝରରୁ ପ୍ରାପ୍ତ ଦ୍ୱିତୀୟ ପୋଥିରେ ମଧ୍ୟ ଅଛି; କିନ୍ତୁ ପୂର୍ବାପର ବିଷୟର ସନ୍ଦର୍ଭରେ ଏହି ପଦ ଗୁଡ଼ିକ (୨୮୧ ଠାରୁ ୨୮୯ ସୁଦ୍ଧା) ପ୍ରକ୍ଷିପ୍ତ ମନେ ହୁଏ । ପ୍ରକ୍ଷିପ୍ତ ମାନିବାର କାରଣ ଏହି ଯେ (୧) ଉକ୍ତ ପଦ ଗୁଡ଼ିକରେ ପରବର୍ତ୍ତୀ କବି କର୍ଣ୍ଣପୁଷ୍ପ କବିରାଜଙ୍କର ନାମ ଅଛି ଓ (୨) ବିଷୟର କ୍ରମ ପୂର୍ବ ଓ ପର ପଦ ମାନଙ୍କଠାରୁ କିଛି ଜଣା ପଡ଼ୁ ନାହିଁ ।

ପୂର୍ବ ପଦମାନଙ୍କର ବିଷୟ ଥିଲା—ନାନା ତୀର୍ଥରେ ସ୍ନାନ କଲାର ସବୁ ଫଳ କେବଳ ଅଭୟ ପାଦ ପଦ୍ମରେ ଭଜନ କଲେ ମିଳେ (ପଦ—୨୬୮-୨୭୫) । ନାନା ପୁରାଣ ଶ୍ରବଣର ଫଳ, ବ୍ରହ୍ମ ହତ୍ୟାଦି ପ୍ରାୟଶ୍ଚିତ୍ତର ଫଳ, ନାନା ଦାନାଦିର ଫଳ ଓ ଯଜ୍ଞଫଳ କେବଳ ଅଭୟ ପାଦପଦ୍ମରେ

ଭଜନଲେ ମିଳି ଯାଏ (ପଦ-୨୭୬-୨୮୫) । କିନ୍ତୁ ଏହା ପରେ ପରେ ଅସଂଲଗ୍ନ ଭାବେ "ଚୈତନ୍ୟାବତାରେ·········ବଖାଣନ୍ତି" (ଅରୁଣୋଦୟ ପ୍ରେସ ପୁସ୍ତକ ୨୮୨-୨୮୯) ଅଛି । ଏହି ପଦ ଗୁଡ଼ିକ କୌଣସି ଗୌଡ଼ୀୟ ଭକ୍ତ ନିଜର ସ୍ୱାର୍ଥ ସାଧନ ପାଇଁ ଯୋଗ କରିଥିବା ପରି ମନେ ହୁଏ । କାରଣ ଏହାର ଠିକ ପରବର୍ତ୍ତୀ ପଦମାନଙ୍କରେ ଯଜ୍ଞଫଳଠାରୁ ହରି ଭକ୍ତି ବଡ଼ ବୋଲି କୁହାଯାଇଛି (ପଦ ୨୮୭) । ଓ ଏହାପରେ ପରେ ପୁନଃ ତୀର୍ଥ ସ୍ଥାନରେ ବାସ କରିବା, ପୁରାଣ ଶାସ୍ତ୍ର, ମନ୍ତ୍ର ପାଳନର ଫଳ କେବଳ ଶ୍ରୀଚରଣରେ ହିଁ ମିଳେ, କୁହାଯାଇଛି । (ପଦ ୨୮୭-୨୯୦ —ଏହି ପୁସ୍ତକରେ) ।

ପଣ୍ଡିତ ବିନାୟକ ମିଶ୍ର ଚୈତନ୍ୟଙ୍କୁ ଗୋବିନ୍ଦ ଭଞ୍ଜଙ୍କର ମନ୍ତ୍ର ଓ ଧ୍ୟାନ-ଗୁରୁ ମଧ୍ୟ ମାନି ନେବାର ପ୍ରମାଦ କରିଛନ୍ତି । ସେ ଯେଉଁ ପଦର ଉଦ୍ଧୃତି ଦେଇଛନ୍ତି । ତାହା ହେଲା :—

"ଯେଉଁ ଉପଦେଶ ଦେଲଇଁ ତୋରେ ।
ହୃଦଗତେ ରଖି ଲଭିବୁ ମୋରେ ॥" (ପଦ-୫୪୧)

ଓ

"ଅଜପାଧ୍ୟାଇବୁ ଯେବେ ହେ। ରାଜନ ।
ଆମ୍ଭ ସଙ୍ଗେ ଭେଟ ହୋଇବାକ ପୁଣ ।" (ପଦ-୫୫୯)

କିନ୍ତୁ ଏହି ବାଣୀ ଶ୍ରୀ ଚରଣ ସୁଧାନିଧିର ସନ୍ଦର୍ଭରେ ଚୈତନ୍ୟଙ୍କର ନୁହେଁ, ବ୍ରହ୍ମ ବା ଭଗବାନଙ୍କର ଭକ୍ତ ପ୍ରତି ଉକ୍ତି । ପ୍ରମାଦବଶତଃ ଚୈତନ୍ୟଙ୍କର ବାଣୀ ମାନି ପଣ୍ଡିତ ମିଶ୍ରେ ଏକ ଆଡ଼େ ଚୈତନ୍ୟଙ୍କୁ ସମସ୍ତ ମାର୍ଗ (ହଠଯୋଗ ପରକ କ୍ରିୟା ମାର୍ଗ ମଧ୍ୟ) ର ସମର୍ଥକ ମାନି ନେଇଛନ୍ତି ଓ ଅନ୍ୟ ଆଡ଼େ ଗୋବିନ୍ଦ ଭଞ୍ଜଙ୍କୁ ଚୈତନ୍ୟ ମତାବଲମ୍ବୀ ଭାବେ ସ୍ୱୀକାର କରିଛନ୍ତି ।

ଉକ୍ତ ସମସ୍ତ ବିବେଚନାରେ ଦୁଇ ପ୍ରକାରର ମତ ଦେଖା ଯାଇପାରେ ।

କ) ଯେ ରାଜା ଗୋବିନ୍ଦ ଭଞ୍ଜ ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀ (ରାଜ୍ୟକାଳ-୧୪୮୦-୧୫୩୪ ଖ୍ରୀଃ) ର କବି । ଏହି ମତର ପୋଷକ ହେଉଛନ୍ତି କ୍ଷେତ୍ରମୋହନ ମିଶ୍ର, ବାନାମ୍ବର ଆଚାର୍ଯ୍ୟ, ବିନାୟକ ମିଶ୍ର ଓ ଡଃ ମହତାବ ।

ଖ) ଯେ ସେ ଷୋଡ଼ଶ-ସପ୍ତଦଶ ଶତାବ୍ଦୀ (ରାଜ୍ୟକାଳ ୧୬୦୩-୧୬୩୪ ଖ୍ରୀ) ର କବି । ଏହି ମତର ପୋଷକ ହେଉଛନ୍ତି ହଣ୍ଟର, ବାବୁ ଅଜୟ ଚନ୍ଦ୍ର ଦାସଙ୍କ (କେନ୍ଦୁଝରର ରେଭିନ୍ୟୁ ରିପୋର୍ଟ) ଓ କେଦାରନାଥ ମହାପାତ୍ର ।

ଏହି ଦୁଇ ମତ ଭିତରେ ରହିଛି ପ୍ରାୟ ଏକଶହ ବର୍ଷର ବ୍ୟବଧାନ ।

ଏବେ ନିମ୍ନ କଥା ଗୁଡ଼ିକ ପ୍ରତି ଧ୍ୟାନ ଦିଆ ଯାଉ :—

୧ । ଗୋବିନ୍ଦ ଭଞ୍ଜଙ୍କ ଛଡ଼ା ଅନ୍ୟ କୌଣସି ରାଜାଙ୍କ ନାମ ବୀର ଗୋବିନ୍ଦପୁରର ଶ୍ରୀ ରଘୁନାଥ ମନ୍ଦିର ଓ ଘଟଗାଁର ତାରିଣୀଙ୍କ ସହିତ ସଂଶ୍ଳିଷ୍ଟ ଥିବାର ଜଣାଯାଏ ନାହିଁ । ଏହି ସ୍ଥାନ ଓ ପୀଠ ଗୁଡ଼ିକ ଏବେ ମଧ୍ୟ କେନ୍ଦୁଝରରେ ଥିବାରୁ, ଏହାଙ୍କ ସାଙ୍ଗରେ ଜଡ଼ିତ କିମ୍ବଦନ୍ତୀଙ୍କୁ ପୂରାପୂରି କପୋଳ କଳ୍ପିତ କହିବା ସମୀଚୀନ ନୁହେଁ ।

୨ । ଶ୍ରୀ ରଘୁନାଥ ଓ ତାରିଣୀ କାଞ୍ଚିରୁ ଆସିଥିଲେ ବୋଲି କୁହା ଯାଉଛି । ଏହି କଥାର ଐତିହାସିକତା କଣ, କିଛି ଜଣାପଡୁ ନାହିଁ । ସାକ୍ଷୀଗୋପାଳର ଶ୍ରୀ ଗୋପାଳ ମଧ୍ୟ କାଞ୍ଚିରୁ ଆସିବା କଥା ପ୍ରଚଳିତ ଅଛି । ଗଠନ ଦୃଷ୍ଟିରୁ ଅବଶ୍ୟ ଶ୍ରୀ ରଘୁନାଥଙ୍କ ମୂର୍ତ୍ତିର ଯଥେଷ୍ଟ ସାମ୍ୟ ଉକ୍ତ ଶ୍ରୀ ଗୋପାଳଙ୍କ ସହିତ ଦେଖା ଯାଏ ।

୩ । ଐତିହାସିକମାନେ 'କାଞ୍ଚି' ନାମକ ଯୁଦ୍ଧ ବିଷୟରେ ନୀରବ । ହଣ୍ଟର, ଷ୍ଟର୍ଲିଂ, ବନର୍ଜୀ, ନବୀନ କୁମାର ସାହୁ ଆଦି ଐତିହାସିକ ବିଜୟନଗର (କର୍ଣ୍ଣାଟକ) ଯୁଦ୍ଧର ଉଲ୍ଲେଖ କରିଛନ୍ତି ଓ ଏହି ଯୁଦ୍ଧ ପୁରୀରାଜା ପୁରୁଷୋତ୍ତମ ଦେବ ଓ କର୍ଣ୍ଣାଟକ ରାଜା ଶାଳ୍ୱ ନରସିଂହଙ୍କ ମଧ୍ୟରେ ହୋଇଥିବା କଥା ଲେଖିଛନ୍ତି । ଏଥିରେ ଆଗ ହାରି ଯାଇ ପରେ ପୁରୁଷୋତ୍ତମ ଦେବ ଜିତିଛନ୍ତି । କାଞ୍ଚିକାବେରୀର କବି ପୁରୁଷୋତ୍ତମ ଦାସ ସମ୍ଭବତଃ ଉକ୍ତ ଯୁଦ୍ଧକୁ ହିଁ କାଞ୍ଚି ଯୁଦ୍ଧ ରୂପେ ବର୍ଣ୍ଣନା କରିଛନ୍ତି । ଲକ୍ଷ୍ୟ କରିବା କଥା ଯେ ଉକ୍ତ ଇତିହାସକାରଗଣ ବା ପୁରୁଷୋତ୍ତମ ଦାସ କୌଣସି ଠାରେ ରାଜା ଗୋବିନ୍ଦ ଭଞ୍ଜଙ୍କ ନାମ ଏହି ଯୁଦ୍ଧ

ସନ୍ଦର୍ଭରେ ବ୍ୟବହାର କରି ନାହାନ୍ତି, ଯଦି ଓ କେନ୍ଦୁଝରର କମ୍ବଦନ୍ତୀ ଏହାକୁ ସମର୍ଥନ କରେ ।

୪ । ୧୬୦୦-୧୬୨୧ ଖ୍ରୀ: ରେ ଖୁର୍ଦ୍ଧାରେ ଜଣେ ରାଜା ପୁରୁଷୋତ୍ତମ ଦେବ ରାଜତ୍ୱ କରୁଥିଲେ ।

୫ । ରେଭିନ୍ୟୁ ରିପୋର୍ଟରେ ଥିବା କେନ୍ଦୁଝରର ରାଜ ବଂଶାବଳୀ ଓ କ୍ଷେତ୍ରମୋହନ ମିଶ୍ରଙ୍କ 'କେନ୍ଦୁଝର' ପୁସ୍ତକର ଶେଷରେ ଥିବା ରାଜବଂଶାବଳୀରେ ପ୍ରଥମ ରାଜା ଜ୍ୟୋତି ଭଞ୍ଜଙ୍କଠାରୁ ତ୍ରୟୋଦଶ ରାଜା ଜଗନ୍ନାଥ ଭଞ୍ଜ (୧୧୨୮ ଠାରୁ ୧୩୫୪ ଖ୍ରୀ:)ଙ୍କ ସୁଦ୍ଧା କୌଣସି ରାଜାଙ୍କର ରାଜ୍ୟ କାଳରେ କିଛି ତଫାତ ନାହିଁ । କିନ୍ତୁ ଚତୁର୍ଦ୍ଦଶ ରାଜା ଶ୍ରୀଧର ଭଞ୍ଜଙ୍କଠାରୁ ଦ୍ୱାବିଂଶ ରାଜା ଗୋବିନ୍ଦ ଭଞ୍ଜଙ୍କ ସୁଦ୍ଧା ଏକଶହ ବର୍ଷର ତଫାତ୍ ଦେଖିବାକୁ ମିଳେ । ନିମ୍ନରେ ତାହା ସୂଚାଇ ଦିଆଗଲା :—

| କ୍ରମ | କେନ୍ଦୁଝରର ଭଞ୍ଜ ରାଜାମାନଙ୍କ ନାମ | ରାଜ୍ୟକାଳ: କ୍ଷେତ୍ରମୋହନ ମିଶ୍ରଙ୍କ କେନ୍ଦୁଝରର ବଂଶାବଳୀ ସମୟ ଖ୍ରୀ: (୧) | ରାଜ୍ୟକାଳ: ରେଭିନ୍ୟୁ ରିପୋର୍ଟରେ ଥିବା ସମୟ ଖ୍ରୀ: (୨) | ବର୍ଷରେ ମୋଟ ରାଜ୍ୟକାଳ (୧) | ବର୍ଷରେ ମୋଟ ରାଜ୍ୟକାଳ (୨) | ବର୍ଷରେ ତଫାତ୍ (୨-୧) |
|---|---|---|---|---|---|---|
| ୧୪ | ଶ୍ରୀଧର | ୧୩୫୪-୧୩୬୯ | ୧୩୫୪-୧୩୭୩ | ୧୫ | ୧୯ | + ୪ |
| ୧୫ | ଶ୍ରୀକର | ୧୩୬୯-୧୩୮୨ | ୧୩୭୩-୧୪୧୨ | ୧୩ | ୩୯ | + ୨୬ |
| ୧୬ | ହୃଷୀକେଶ | ୧୩୮୨-୧୪୦୬ | ୧୪୧୨-୧୪୫୬ | ୨୪ | ୪୪ | + ୨୦ |
| ୧୭ | ଗୋପୀନାଥ | ୧୪୦୬-୧୪୧୭ | ୧୪୫୬-୧୪୭୭ | ୧୧ | ୨୧ | + ୧୦ |
| ୧୮ | ହାଡ଼ୁ | ୧୪୧୭-୧୪୩୨ | ୧୪୭୭-୧୫୦୨ | ୧୫ | ୨୫ | + ୧୦ |
| ୧୯ | ଚନ୍ଦ୍ରଶେଖର | ୧୪୩୨-୧୪୫୩ | ୧୫୦୨-୧୫୪୩ | ୨୧ | ୪୧ | + ୨୦ |
| ୨୦ | ଜଗନ୍ନାଥ | ୧୪୫୩-୧୪୬୧ | ୧୫୪୩-୧୫୮୫ | ୮ | ୪୨ | + ୩୪ |
| ୨୧ | ତ୍ରିଲୋଚନ | ୧୪୬୧-୧୪୮୦ | ୧୫୮୫-୧୬୦୩ | ୧୯ | ୧୮ | — ୧ |
| ୨୨ | ଗୋବିନ୍ଦ | ୧୪୮୦-୧୫୩୪ | ୧୬୦୩-୧୬୩୪ | ୫୪ | ୩୧ | — ୨୩ |
| | ମୋଟ | ୧୩୫୪-୧୫୩୪ | ୧୩୫୪-୧୬୩୪ | ୧୮୦ | ୨୮୦ | + ୧୨୪<br>— ୨୪ |
| | | | | | | ୧୦୦ |

ଉକ୍ତ ବଂଶାବଳୀର ଦୁଇ ପ୍ରକାରର କାଳରୁ ଗୋଟିକୁ ଗ୍ରହଣ କରିବା ବା ନ କରିବା ପାଇଁ କୌଣସି ବଳିଷ୍ଠ ପ୍ରମାଣ ନାହିଁ । କିମ୍ବଦନ୍ତୀ ଇତିହାସ ନୁହେଁ, ଏହା ମନେ ରଖିବାକୁ ହେବ ।

୬। ନିଜ ପିତାଙ୍କ ନାମ ଛଡ଼ା ଅନ୍ତର୍ସାକ୍ଷ୍ୟ ପାଇଁ କାଳ ବିଷୟକ କୌଣସି ଉପାଦାନ ଗୋବିନ୍ଦ ଭଞ୍ଜଙ୍କର କୌଣସି ରଚନାରେ ନାହିଁ ।

ଏତଏବ କିମ୍ବଦନ୍ତୀ ଓ ଇତିହାସର ଏହି ଦ୍ୱନ୍ଦ୍ୱରେ ଗୋବିନ୍ଦ ଭଞ୍ଜଙ୍କ କାଳ ବିଷୟକ ନିର୍ଣ୍ଣୟ ତଥ୍ୟ-ମୂଳକ ଗବେଷଣା ଦ୍ୱାରା ଭବିଷ୍ୟତରେ କରିବାର ବାସନା ରହିଲା ।

ଅବଶ୍ୟ କାଳ ନିର୍ଦ୍ଧାରଣର ଅନିଶ୍ଚିତତା ଦ୍ୱାରା ତାଙ୍କର କବି ବ୍ୟକ୍ତିତ୍ୱ କୌଣସି ପ୍ରକାର ଖଣ୍ଡିତ ହେଉ ନାହିଁ ।

## ୬ ସମ୍ପ୍ରଦାୟ

କବିଙ୍କ ଜୀବନୀ ସମ୍ବନ୍ଧରେ ଆଲୋଚନା ବେଳେ କୁହାଯାଇଛି ଯେ କବି ଗୋବିନ୍ଦ ଭଞ୍ଜ 'ମିଶ୍ର-ସମ୍ପ୍ରଦାୟ' ଭୁକ୍ତ ଥିଲେ । ଉତ୍କଳରେ ଚୈତନ୍ୟଙ୍କ ଆଗମନ (୧୫୧୦) ପରେ, ଗୌଡ଼ୀୟ ପ୍ରଭାବ ପଡ଼ିଥିଲା ସତ, କିନ୍ତୁ ପ୍ରମୁଖ ଉକ୍ତ ପଞ୍ଚସଖାଦି କବିମାନେ ଏହି ପ୍ରଭାବରୁ ମୁକ୍ତ ଥିଲେ । ସେହିପରି ରାଜା ଗୋବିନ୍ଦ ଭଂଜ ମଧ୍ୟ ସେ ପ୍ରଭାବରୁ ପୁରାପୁରି ମୁକ୍ତ ଥିଲେ ।

ଉତ୍କଳରେ ଚୈତନ୍ୟଙ୍କ ଆଗମନ ପୂର୍ବରୁ ଏକ ପ୍ରକାର ଜ୍ଞାନ ଓ ଯୋଗ ମିଶ୍ରିତ ବୈଷ୍ଣବ ଧର୍ମ ପ୍ରଚଳିତ ଥିଲା । ଏହା ହେଉଛି ଯୋଗ ମାର୍ଗ ସମ୍ବଳିତ କୃଷ୍ଣ ବା ପ୍ରେମଭକ୍ତି । ଅଜପା ଜପ, ଧ୍ୟାନ, ମନ୍ତ୍ର, ଜ୍ଞାନମାର୍ଗ, ହଠଯୋଗ ସାଧନା, ଆଦିର ଯଥେଷ୍ଟ ଉପାଦାନ ଶ୍ରୀ ଚରଣ ସୁଧାନିଧିର ଦ୍ୱିତୀୟ ଭାଗରେ ସନ୍ନିହିତ । 'ମାଣିକୋଠ'ଠାରେ କବିର ବନ୍ଧନ ଓ ପ୍ରଭୁଙ୍କର କୃପାରୁ, ନିଜର ଉଦ୍ଧାର ଦ୍ୱାରା, ଗୋବିନ୍ଦ ଭଂଜ ଦେଖାଇବାକୁ ଚାହିଁଛନ୍ତି ଯେ, ହରି କୃପାର ସ୍ଥାନ ସର୍ବୋଚ୍ଚ । 'ଭକ୍ତି ବିନୋଦ'ର ବସ୍ତ୍ରହରଣ ବୋଲିରେ କବି, ଶୃଙ୍ଗାର ମଗ୍ନ ନ ହୋଇ ଶ୍ରୀ କୃଷ୍ଣଙ୍କ ଦ୍ୱାରା ଗୋପୀଙ୍କର ଭକ୍ତି ପରୀକ୍ଷା କରାଇଛନ୍ତି ।

"ସଂସାର ବାସନା ଗୋପୀ ସବୁ ପାଶୋରିଲେ ।"

'ଭକ୍ତ ବିନୋଦ' ବସ୍ତ୍ରହରଣ ବୋଲି ଦଶମ ଗାଥା ପୃ. ୬୬

ସେମାନେ ଏଥିରେ ସମାଧିମଗ୍ନ ଅବସ୍ଥାରେ ବ୍ରହ୍ମାନନ୍ଦ ଉପଭୋଗ କରିଛନ୍ତି ।

## ୩ । ଗୋବିନ୍ଦ ଭଞ୍ଜଙ୍କ ରଚନାବଳୀ

ଗୋବିନ୍ଦ ଭଞ୍ଜଙ୍କର ଚାରୋଟି ରଚନା ଥିବାର ଜଣାଯାଏ—

୧ । ବଉଳା ଚରିତ

୨ । ଭକ୍ତ ବିନୋଦ

୩ । ରାମଗାଥା

୪ । ଶ୍ରୀଚରଣ ସୁଧାନିଧି

୧ ବଉଳା ଚରିତ—ଏହା ଏକ ଉପାଖ୍ୟାନ ମୂଳକ କାବ୍ୟ । ଓଡ଼ିଶାର ପୁରାଣ ସ୍ଥାମୀପ୍ତ କେନ୍ଦ୍ରବାଦକ ନାଥମାନେ ନିଜର ଭିକ୍ଷା ସଂଗ୍ରହ ନିମନ୍ତେ ଏହାର ଆବୃତ୍ତି କରିଥାନ୍ତି । ବଳରାମ ଦାସ, ଧନକୃଷ୍ଣ ଓ ଜଗନ୍ନାଥ ଦାସଙ୍କର ମଧ୍ୟ "ବଉଳା ଅଧ୍ୟାୟ" ନାମକ ଉକ୍ତ ବିଷୟକ ରଚନା ମାନ ଅଛି । ଚକୁଳିଆ ପଣ୍ଡାମାନେ ମଧ୍ୟ ଉକ୍ତ ଗୀତର ଉଦ୍ଧୃତ କରନ୍ତି ।

ଏହାର କଥାବସ୍ତୁରେ ପ୍ରଥମ ପ୍ରସୂତ ଧେନୁର ସନ୍ତାନ ବାତ୍ସଲ୍ୟ, ବାଳ ବତ୍ସର ମାତୃଭକ୍ତି, ପୁଣ୍ୟବାନର ଭାଗ୍ୟ, ଯେ କୌଣସି ଉପାୟରେ ଶରୀର ରକ୍ଷା କରିବ କୁ ଯିବା ମତର ଖଣ୍ଡନ, ଧେନୁର ସେଥିପାଇଁ ସତ୍ୟ ରକ୍ଷା କରି ନିଜର ଶରୀରକୁ ବ୍ୟାଘ୍ରକୁ ସମର୍ପଣ କରିବାକୁ ଫେରି ଆସିବା; ତାହାର ଚରିତ୍ରର ବ୍ୟାଘ୍ରର ପାଷାଣ ହୃଦୟ ଦ୍ରବୀଭୂତ ହେବା ଓ ସ୍ୱଭାବ କ୍ରମେ ଅହିଂସାଭାବ ଜାତ ହେବା— ଦେଖାଇ ଦିଆ ଯାଇଛି ।

'ଇତିହାସ ସମୁଚ୍ଚୟ' ନାମକ ସଂସ୍କୃତ ଗ୍ରନ୍ଥରୁ ଏହାର ବସ୍ତୁ ଗୃହୀତ ହୋଇଥିବା କଥା ଗୋବିନ୍ଦ ଭଞ୍ଜ ଲେଖିଛନ୍ତି । 'ଇତିହାସ-ସମୁଚ୍ଚୟ'ରେ ଉକ୍ତ ଉପାଖାନ "ବହୁଳୋପାଖ୍ୟାନ" ନାମରେ ଅଛି ।୧

୧ । ଇତିହାସ ସମୁଚ୍ଚୟ ଉତ୍କଳ ବିଶ୍ୱବିଦ୍ୟାଳୟ ପୋଥି ବିଭାଗ S. I. 88

୨ ଭକ୍ତ ବିନୋଦ—ଏହା କୃଷ୍ଣ କଥା ସମ୍ବଳିତ କାବ୍ୟ । ଜନ୍ମଠାରୁ ରାସକ୍ରୀଡ଼ା ପର୍ଯ୍ୟନ୍ତ କୃଷ୍ଣ ଲୀଳାର ବର୍ଣ୍ଣନା ଏହାର ବିଷୟ ବସ୍ତୁ । ଗୋପୀଙ୍କ ଭକ୍ତି ଅନୁଯାୟୀ ଏହା ସତରଟି ଗାଥାରେ ବିଭକ୍ତ ।

ଦିନେ ଗୋପୀଏ ଏକତ୍ରିତ ହୋଇ ଶ୍ରୀକୃଷ୍ଣଙ୍କ ବିଷୟରେ ଚର୍ଚ୍ଚା କରୁଥିବା ବେଳେ ରାଧିକା ତାହାଙ୍କୁ ତାଙ୍କ ସଙ୍ଗରେ ଦଧି ବିକି ଯିବା ପାଇଁ ଅନୁରୋଧ କଲେ । ସେମାନେ ରାଧିକା ସାଙ୍ଗରେ ଗଲେ ପ୍ରମାଦ ପଡ଼ିବା କଥା କହିଲେ । ରାଧା ମଧ୍ୟ ଏକାକିନୀ ଯିବା ନିରାପଦ ମନେ କଲେ ନାହିଁ । ରାଧା ପୁନଃ-ପୁନଃ ପ୍ରାର୍ଥନା କଲେ । ଗୋପୀମାନେ କହିଲେ ଯେ 'ତା କୃଷ୍ଣ ଠାରୁ କିଏ ଲୁଚି ପାରିବ ?' ଏହା ପରେ-ପରେ ପ୍ରତ୍ୟେକ ଗୋପୀ ଗୋଟି-ଗୋଟି ହୋଇ ଶ୍ରୀକୃଷ୍ଣଙ୍କ ବିବିଧ ଚରିତ୍ର ବିଜ୍ଞ ବର୍ଣ୍ଣନା କରିବାକୁ ଲାଗିଲେ ! ଏହାହିଁ ଭକ୍ତ ବିନୋଦର ମୁଖବନ୍ଧର ବିଷୟ । ସତରଟି ଗାଥାର ସୂଚୀ ଏଠାରେ ଦିଆ ହେଲା—

| | |
|---|---|
| ୧ - ଗାଥା - ମୁଖବନ୍ଧ | ୧୦ - ଗାଥା- ବସ୍ତ୍ରହରଣ |
| ୨ - ଗାଥା - ପୂତନା ବଧ | ୧୧ - ଗାଥା - ଦାବାନଳପାନ |
| ୩ - ଗାଥା - ଶକଟାସୁରବଧ | ୧୨ - ଗାଥ - କୌଣସି ଗୋପୀକାର ଜୀବନକର ଅନୁଭୂତି |
| ୪ - ଗାଥା - ତୃଣାବର୍ତ୍ତବଧ | ୧୩ - ଗାଥ - ଶ୍ରୀରାଧାଙ୍କର ବଂଶୀଗୁଣ କଥନ |
| ୫ - ଗାଥା - କୋଳିଆଣିର ଧନପ୍ରାପ୍ତି | ୧୪ - ଗାଥା - ଇନ୍ଦ୍ର ପୂଜା |
| ୬ - ଗାଥା - ଅଘାସୁର ବଧ | ୧୫ - ଗାଥା - ସଙ୍କେତ |
| ୭ - ଗାଥା - ବୃଷଭାସୁର ବଧ | ୧୬ - ଗାଥା - କାଳୀୟ ଦଳନ |
| ୮ - ଗାଥା - ବକାସୁର ବଧ | ୧୭ - ଗାଥା - ରାସକ୍ରୀଡ଼ା |
| ୯ - ଗାଥା - ବତ୍ସାହରଣ | |

ପୋଥି ଖଣ୍ଡିତ ହେତୁ ଅନ୍ତିମ ଗାଥାଟି ଅସଂପୂର୍ଣ୍ଣ । ଏହା ଭାଗବତର ରାସକ୍ରୀଡ଼ାର ସରସ ଅନୁବାଦ । 'ସ୍ତନ' ବଦଳରେ 'ହୃଦ' ଶବ୍ଦର ପ୍ରୟୋଗ କବିଙ୍କର ମାର୍ଜିତ ରୁଚିର ପରିଚୟକ ! ଏଥିରେ ଗୀତ ଗୋବିନ୍ଦର ଛାୟା ପରିଲକ୍ଷିତ ହୁଏ ! ପ୍ରତି ପଦରେ ଭକ୍ତିର ବିମଳ ଉଚ୍ଛ୍ୱାସ ଫୁଟି ଉଠିଛି ! ଆତ୍ମ ନିବେଦନର ଭାବ ପ୍ରବଣତା, ଏହି କାବ୍ୟକୁ ସରସ ଓ ମଧୁର କରିପାରିଛି ।

୩ । ରାମଗାଥା— ଚଉଦ ଅକ୍ଷରୀ ବୃତ୍ତରେ ଏହା ଏକ ଚରିତ କାବ୍ୟ ଅଟେ । ୰ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଏହାକୁ ଉକ୍ତ ବିନୋଦର ଶେଷାଂଶ କରିଛନ୍ତି । ରାମଙ୍କର ପୂର୍ବରୁ ସମସ୍ତ ଅବତାର ଏଥିରେ ଅତି ସଂକ୍ଷେପରେ (ପଦ ୧-୬୫) କଥିତ । କବି ପ୍ରାରମ୍ଭରେ କହିଛନ୍ତି ଯେ ସେ ଏଥିରେ ଦଶାବତାର ବର୍ଣ୍ଣନା କରୁଛନ୍ତି—

"କହେ ରାଜା ଗୋବିନ୍ଦ ସେ ଦଶ ଅବତାର ।
ଦୂର୍ବୁଦ୍ଧି କି ନାଶି ଗୋ ଦୁର୍ଗତି ପାର କର ।"
"ଗୋପୀଏ ବୋଇଲେ ଶୁଣଶୁଣ ଗୋ ମିତଣୀ ।
ଯୁଗେ ଯୁଗେ ତାହାର ଗୋ ଦୁଷ୍ଟ-ପଣ ପୁଣି ।"

କିନ୍ତୁ ରାମଚରିତ ଅତି ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇ ଥିବାରୁ ଏହାର ନାମକରଣ 'ରାମଗାଥା' କରାଯାଇଛି ! (ପଦ : ୬୬ ଠାରୁ ୩୯୧)

୪ । ଶ୍ରୀ ଚରଣ ସୁଧାନିଧି—ପରେ ଏହି କାବ୍ୟର ଚର୍ଚ୍ଚା ନିଷ୍ପ୍ରୟୋଜନ ।

ପୂର୍ବୋକ୍ତ ରଚନା ଗୁଡ଼ିକ ପୂର୍ବରୁ ପ୍ରକାଶିତ । "ବଉଳା ଚରିତ ଓ ରାମଗାଥା" ଏକ ସଙ୍ଗରେ କେନ୍ଦୁଝର ଗ୍ରନ୍ଥମାଳାର ୪ର୍ଥ ୫ମ ସଂଖ୍ୟା ରୂପେ ପ୍ରକାଶ ପାଇଛି । ଏହି ଉଭୟଟିର ସମ୍ପାଦନା କରିଛନ୍ତି ୰ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ! ଶ୍ରୀଚରଣ ସୁଧାନିଧି ୧୯୨୫ ରେ ଅରୁଣୋଦୟ ପ୍ରେସରୁ ପ୍ରକାଶ ପାଇଥିଲା । କିନ୍ତୁ ଏଥିରେ ଶୁଦ୍ଧପାଠ ପ୍ରତି ଦୃଷ୍ଟି ଦିଆ ଯାଇ ନ ଥିଲା ।

## ୪ । ଶ୍ରୀ ଚରଣ ସୁଧାନିଧି

### (କ) ବିଷୟ ବସ୍ତୁ :

ଉପଲବ୍ଧ ପୋଥି ଗୁଡ଼ିକ ବିଷୟରେ ଆଗରୁ ବିଚାର କରାଯାଇଛି ଓ କୁହାଯାଇଛି ଯେ ସେ ସବୁ ପୋଥିରୁ ଦୁଇ ପ୍ରକାରର 'ପାଠ' ମିଳୁଛି । ସେହି ଅନୁସାରେ ଗୃହୀତ 'ପାଠ'ର ବିଷୟ ବସ୍ତୁକୁ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ —

ପ୍ରଥମ ଭାଗ : ୧ ଠାରୁ ୩୨୪ ପଦ ।
ଦ୍ୱିତୀୟ ଭାଗ : ୩୨୫ ଠାରୁ ୮୦୩ ପଦ ।

ଏହା ଏକ ମୁକ୍ତକ ଓ ଚିନ୍ତନଶୀଳ ଭକ୍ତିକାବ୍ୟ ହୋଇ ଥିବାରୁ ଏଥିରେ କଥା ପ୍ରବାହର ଅଭାବ ପରିଲକ୍ଷିତ ହୁଏ । ଖଣ୍ଡ-କଥାମାନ ଅନେକ ସ୍ଥଳରେ ଶ୍ରୀଭଗବାନଙ୍କ ଶ୍ରୀଚରଣର ମହତ୍ତ୍ୱ ପ୍ରତିପାଦନ ପାଇଁ ଉଦାହରଣ ରୂପରେ କବି ସମାବେଶ କରିଛନ୍ତି । ନିମ୍ନରେ ଏହାର ଯଥାର୍ଥତା ଦେଖାଯାଉ —

ସମସ୍ତ ପଦଗୁଡ଼ିକୁ ମୁଖ୍ୟ ଚାରୋଟି ଭାଗରେ ବିଭକ୍ତ କରାଯାଇ ପାରେ —

୧ । ଶ୍ରୀଚରଣର ମହତ୍ତ୍ୱ ପ୍ରତିପାଦକ ପଦ ଓ ଅନ୍ୟାନ୍ୟ

୨ । ଖଣ୍ଡ-କଥାତ୍ମକ ବିସ୍ତୃତ ବିଷୟ ପ୍ରତିପାଦକ ପଦ

୩ । ଖଣ୍ଡ-କଥାତ୍ମକ ସଂକ୍ଷିପ୍ତ ବିଷୟ ପ୍ରତିପାଦକ ପଦ

୪ । ଜ୍ଞାନ ଓ ଯୋଗମାର୍ଗ ପରକ ପଦ

ନିମ୍ନରେ ଏହି ସବୁର ବିଶଦ ବିବରଣୀ ଦିଆଗଲା :

୧ । ଶ୍ରୀଚରଣର ମହତ୍ତ୍ୱ ପ୍ରତିପାଦକ ଓ ଅନ୍ୟାନ୍ୟ ପଦ

| କ୍ରମ | ବିଷୟ | ପଦସଂଖ୍ୟା | ମୋଟ | |
|---|---|---|---|---|
| ୧ | ଶ୍ରୀଚରଣର ମହତ୍ତ୍ୱ ଓ ପ୍ରଭୁଙ୍କ ମହିମା | ୧-୭, ୨୬-୩୦, ୨୨୭-୨୩୩, ୨୩୯-୨୪୨, ୨୫୨-୨୬୬, ୩୦୨-୩୦୩, ୩୦୯-୩୨୨ | ୫୪ | ୧୫୭ |
| | | ୩୨୫, ୩୩୦-୩୩୯, ୩୫୧, ୪୧୮, ୪୧୯, ୪୨୧, ୪୩୮, ୪୫୧-୪୫୩, ୪୫୭-୪୬୪, ୪୯୨, ୪୯୩, ୫୦୭-୫୧୨, ୭୩୧-୪୩୮, ୭୪୮-୮୦୩ | ୧୦୩ | |
| ୨ | ତୀର୍ଥ ଭ୍ରମଣ, ଦାନ, ଯୋଗ, ଜ୍ଞାନ, ଯଜ୍ଞ ଆଦିର ତୁଳନାରେ ଶ୍ରୀଚରଣରରେ ସତ୍‌ଫଳ ପ୍ରାପ୍ତି | ୨୬୭-୨୭୪, ୨୮୧-୨୮୯ | | |

| କ୍ରମ | ବିଷୟ | ପଦସଂଖ୍ୟା | ମୋଟ |
|---|---|---|---|
| ୩ | ସମସ୍ତ ପୁରାଣ, ଶାସ୍ତ୍ର, ବେଦ, ଭାଗବତ, ରାମାୟଣ ପଠନର ଫଳଠାରୁ ଅଧିକ ଶ୍ରୀଚରଣ | ୨୭୫-୨୭୮ ୨୯୦-୨୯୩ | ୮ |
| ୪ | ଇତ୍ୟାଦି ପ୍ରାପ୍ତି ପରେ ଶ୍ରୀଚରଣ ବୃଦ୍ଧି କାରଣ | ୨୭୯-୨୮୦ | ୨ |
| ୫ | ଭକ୍ତ ଓ ଭକ୍ତିର ମହିମା | ୪୮୮, ୪୮୯, ୫୩୭, ୭୦୮ | ୪ |
| ୬ | ମହିମା ବ୍ରହ୍ମାଶିବ ମଧ୍ୟ ନ କହି ପାରିବା ଓ ସବୁ ସୁଖାଦିର କାରଣ ଶ୍ରୀଚରଣ | ୨୯୪, ୨୯୫, ୩୦୧ | ୩ |
| ୭ | ସଂସାର ସାଗର ତୁଲ୍ୟ | ୩୦୪-୩୦୮ | ୫ |
| ୮ | ପ୍ରଭୁଙ୍କ ସୁନ୍ଦର ରୂପ ବର୍ଣ୍ଣନା | ୪୭୮-୪୮୬, ୫୧୩-୫୧୫ | ୧୨ |
| ୯ | ପ୍ରଭୁଙ୍କ ବିରାଟ ରୂପ ବର୍ଣ୍ଣନା | ୩୪୮-୩୫୦ | ୩ |
| ୧୦ | ଗୁରୁ ମହିମା କଥନ | ୬୯୩, ୬୯୪, | ୨ |
| ୧୧ | କବି ପରିଚୟ | ୪୨୦, ୭୮୫, ୩୨୩, ୩୨୪ | ୪ |

୨) ଖଣ୍ଡ କଥାତ୍ମକ ବିସ୍ତୃତ କଥା (ବିଷୟ) ପ୍ରତିପାଦକ ପଦ

| କ୍ରମ | ବିଷୟ | ପଦସଂଖ୍ୟା | ମୋଟ |
|---|---|---|---|
| ୧ | ରାମ-କଥା ଓ ଭକ୍ତି | ୩୧-୧୪୮ | ୧୧୬ |
| ୨ | କୃଷ୍ଣ-କଥା ଓ ଭକ୍ତି | ୧୪୯-୨୫୧, ୩୨୬-୩୨୯, ୪୦୫-୪୧୭, ୪୩୭-୪୪୦, ୭୫୮-୭୬୦ | ୧୨୭ |

୩) ଖଣ୍ଡ-କଥାତ୍ମକ ସଂକ୍ଷିପ୍ତ କଥା (ବିଷୟ) ପ୍ରତିପାଦକ ପଦ

| କ୍ରମ | ବିଷୟ | ପଦସଂଖ୍ୟା | ମୋଟ |
|---|---|---|---|
| ୧ | ଧ୍ରୁବ ଚରିତ୍ର | ୮-୧୧ | ୩ |
| ୨ | ପ୍ରହ୍ଲାଦ ଚରିତ୍ର | ୧୨-୧୯ | ୮ |
| ୩ | ଅଦ୍ୱିତ ଚରିତ୍ର | ୨୦-୨୨ | ୩ |
| ୪ | ବଳିରାଜା ଚରିତ୍ର | ୨୩-୨୫ | ୩ |
| ୫ | ପ୍ରଭୁଙ୍କ ଅବତାର ବର୍ଣ୍ଣନା | ୩୫୨-୩୯୮, ୪୨୩-୪୩୩, ୪୯୪-୫୦୬, ୭୫୮-୮୦୦ | ୧୦୮ |

| କ୍ରମ | ବିଷୟ | ପଦସଂଖ୍ୟା | ମୋଟ |
|---|---|---|---|
| ୬ | ବ୍ରହ୍ମାଙ୍କ ସୃଷ୍ଟି | ୩୪୩-୩୪୭ | ୫ |
| ୭ | ମାଣିକୋଟଠାରୁ ମୁକ୍ତି ପରେ କବିରପ୍ରଭୁ କୃପାରୁ ପରେ ଗଣୀଙ୍କ ପାଖରେ ପହଁଚିବା ଓ ଦୁଃଖ ବର୍ଣ୍ଣନା | ୭୪୧-୭୪୭<br>୫୧୬, ୫୨୩, ୭୧୧<br>୭୧୫ | ୧୭ |

## ୪ ଜ୍ଞାନ ଓ ଯୋଗମାର୍ଗ ପରକ ପଦ

| କ୍ରମ | ବିଷୟ | ପଦସଂଖ୍ୟା | ମୋଟ |
|---|---|---|---|
| ୧ | ଜ୍ଞାନମାର୍ଗ ଚିନ୍ତା, ମନ୍ତ୍ର, ଜପ ହଠଯୋଗ କ୍ରିୟା; ମାଣିକୋଠ, ଯୋଗସାଧନା, ଦେହଭିକ୍ଷା ଆଦି | ୩୪୦-୩୪୨, ୪୦୦-୪୦୪ ୪୪୪-୪୫୦ ୪୫୪-୪୫୬, ୪୬୮,୪୭୬, ୫୨୧, ୫୩୦, ୫୩୫-୫୩୬, ୫୪୨, ୫୬୭, ୭୦୬, ୭୨୩, ୭୭୬ | ୨୯ |
| | ମନ୍ତ୍ରଜପ | ୪୯୦-୪୯୧, ୫୪୧-୫୬୬ | ୨୮ |
| | ମଧୁସୂଦନ ମନ୍ତ୍ର | ୭୨୩ | ୧ |
| | ଅଜପା | ୫୫୯, ୬୮୯ | ୨ |
| | ଶବ୍ଦର ଭେଦ | ୫୫୫, ୫୬୯ | ୨ |
| | ଦେହ-ବୃକ୍ଷ | ୬୯୭ | ୧ |
| | ହଠଯୋଗ | ୫୬୯-୬୩୩ | ୬୫ |
| | ଯୋଗ ସାଧନା | ୬୩୪-୬୩୯, ୬୪୦-୬୫୨ | ୧୯ |
| | | ୭୦୧-୭୦୬ | ୬ |
| | ସାଧନାର ଅସଫଳତା | ୭୧୬-୭୩୮ | ୨୩ |
| | ଶୂନ୍ୟ ଭିକ୍ଷା | ୬୫୩ | ୧ |
| | ବାୟୁ ଭକ୍ଷଣ | ୬୬୬ | ୧ |
| | ଛୁଇଁ ଲୁଗୁଇବା | ୬୬୮, ୬୭୪ | ୨ |
| | ସ୍ମୃତିମୂଳରେ ମତ୍ତଗଜ ଥାଇ | ୬୭୭ | ୧ |
| | ଭାଇବୋହୂ, ଦେଢ଼ଶୁର ଭେଟ | ୬୮୩, ୬୮୫ | ୨ |

ଉପରିଲିଖିତ ବିଶ୍ଳେଷଣରେ ଏହା ଲକ୍ଷ୍ୟ କରାଯାଇପାରେ ଯେ ଏହି କାବ୍ୟଟି ନିତାନ୍ତ ନିବେଦନପରକ କାବ୍ୟ । ଏଥିରେ କବି ପ୍ରଭୁଙ୍କର ଶ୍ରୀଚରଣର ମହିମାକୁ ତୀର୍ଥ ଭ୍ରମଣ, ଦାନ, ଯୋଗସାଧନା, ଜ୍ଞାନାର୍ଜନ, ଯଜ୍ଞ ଆଦିକର୍ମ, ପୁରାଣ, ଶାସ୍ତ୍ର, ବେଦ ଭାଗବତ, ରାମାୟଣାଦି ପଠନର ଫଳଠାରୁ ଉଚ୍ଚସ୍ଥାନ ପ୍ରଦାନ କରିଛନ୍ତି । ୧

ଜ୍ଞାନ ଓ ଯୋଗମାର୍ଗପରକ ପଦ ଗୁଡ଼ିକ ଏହି ରଚନାର ଦ୍ୱିତୀୟ ଭାଗରେହିଁ ମିଳେ । ସେ ସବୁ ପଦରେ କବି ରାଜ ଓ ହଠଯୋଗ, ସାଧନା, ମନ୍ତ୍ର, ଶରୀରଭେଦ, ଦେହ-ବୃକ୍ଷ, ଶୂନ୍ୟ-ସାଧନା, ବାୟୁ ଭକ୍ଷଣ, ଅଜପା-ଜପ ବିଷୟରେ କହି ମାଣିକୋଠ କେନ୍ଦ୍ରରେ ନଜର ବନ୍ଦୀ ଥିବା କଥା ଲେଖିଛନ୍ତି, କିନ୍ତୁ ଟିକିଏ ଗମ୍ଭୀର ଚିନ୍ତା କଲେ ସ୍ପଷ୍ଟ ଭାବରେ ଜଣାପଡ଼ୁଛି ଯେ କବି ଏସବୁ ଅପେକ୍ଷା ପ୍ରଭୁ କୃପାକୁ ଶ୍ରେଷ୍ଠ ସ୍ଥାନ ଦିଅନ୍ତି । କାରଣ ଯୋଗସାଧନା ଦ୍ୱାରା ସେ ମୁକ୍ତିପଥ ପାଇବାରେ ଅସମର୍ଥ ହେବାବେଳେ ପ୍ରଭୁ କୃପାହିଁ ତାଙ୍କୁ ରକ୍ଷା କରି ପାରିଥିଲା—

"ଯୋଗ ସାଧି କଥା ଶ୍ରୀହରି କହିଲେ
ଧରି ଗୋବିନ୍ଦ ତା ଯୋଗରେ ବସିଲେ ।। ୭୧୭ ।।
× × ×
ମହାମନ୍ତ୍ର ସ୍ୱର ଜପରେ ବସିଲି ।
ଶ୍ରୀ ମଧୁସୂଦନ ମନ୍ତ୍ର ଆରମ୍ଭିଲି ।। ୭୨୨ ।।

ମାଣିକୋଠ ଘର ଅନ୍ଧାର ହୋଇଲା ।
ବାହାର ଭିତରେ କିଛି ନ ଦିଶିଲା ।। ୭୨୩ ।।
× × ×
ସପ୍ତ ଦିନ ସପ୍ତରାତ୍ର ଜପ କଲେ ।
ଲକ୍ଷ୍ମୀନାରାୟଣ ମନରେ ଜାଣିଲେ ।। ୭୨୬ ।।

ଦୂତ ଜଣ ହରି ଆଜ୍ଞା ଦେଲେ ।
ଉତ୍ସବ କରି ଘେନି ଯାଅହୋ ବୋଇଲେ ।। ୭୨୭ ।।

ମାଣିକୋଠେ ଭକ୍ତ ବନ୍ଦିରେ ଅଛଇ ।
ସେଠ ବରୁ ତାଙ୍କୁ ଗୃହେ ଆସ ଥୋଇ ।। ୭୨୮ ।।

---

୧-ପଦ- (୨୬୭-୨୭୦, ୨୭୬-୨୭୮, ୨୮୧-୨୯୩)

କବି ସେଥିଲାଗି ମୁକ୍ତ କଣ୍ଠରେ ପ୍ରଭୁ କୃପାର ମହିମା ଗାନ କରିଛନ୍ତି —

"ତୈଲକ୍ୟର ନାଥ ମୋତେ ଦୟା କଲେ ।
ମାଣିକୋଠଠାରୁ ଉଦ୍ଧରି ଆଣିଲେ ॥ ୭୪୮ ॥

ଉଦାହରଣ ଛଳରେ ଖଣ୍ଡ କଥା ମାନ ଏଥିରେ ସଂଯୋଜିତ ହୋଇଥିଲେହେଁ ଏହା ଚରିତ କାବ୍ୟ ନୁହେଁ । ଚରିତ କାବ୍ୟରେ କଥାର ଯେଉଁ ପ୍ରବାହ ଥାଏ, ଏଥିରେ ତାର ନିତାନ୍ତ ଅଭାବ ପରିଲକ୍ଷିତ ହୁଏ । ଶୈଳୀ ଦୃଷ୍ଟିରୁ ଏଥିରେ ଧାରାବାହିକତା ନାହିଁ । ବାରଂବାର ଗୋଟିଏ କଥାରେ ଉପସ୍ଥାପନ ଦ୍ୱାରା ଭକ୍ତିର ମାହାତ୍ମ୍ୟ ବିବୃତ ହୋଇଥିବାରୁ କବିଙ୍କର ଭାବପୂତ ମାନସ ଓ ହୃଦୟ ପରିସ୍ଫୁଟ ହୋଇଛି । ଏଥିରେ ସ୍ୱାଭାବିକ କାବ୍ୟଧାରାର ଅଭାବ ପରିଲକ୍ଷିତ ହୋଇଥିଲେହେଁ କବିଙ୍କ ଭକ୍ତିଭାବ ପ୍ରକାଶରେ ଏହା ବାଧକ ହୋଇନାହିଁ ।

(ଖ) ଭକ୍ତି—

ଆଗରୁ କୁହା ଯାଇଛି ଯେ ଶ୍ରୀଚରଣ ସୁଧାନିଧିର ଭକ୍ତି ଏକ ପକ୍ଷରେ ବ୍ରହ୍ମଜ୍ଞାନ ମୂଳକ ଓ ଅନ୍ୟ ପକ୍ଷରେ କୃଷ୍ଣ ଓ ରାମ ଭକ୍ତି ମୂଳକ । ଅଧିକନ୍ତୁ କବି ଭକ୍ତମାନଙ୍କର ବିବିଧ ଭକ୍ତି ଯୁକ୍ତ ଚରିତ୍ର ସମାବେଶ କରି ଏହାକୁ ଆହୁରି ଭାବପୁଷ୍ଟ କରିଛନ୍ତି । ଏଥିରେ ସଗୁଣ ଓ ନିର୍ଗୁଣ ଭକ୍ତିର ସୁନ୍ଦର ସମାହାର ଦେଖିବାକୁ ମିଳେ ।

ଶ୍ରୀ ଚରଣ ସୁଧାନିଧିରେ ବଳରାମ ଦାସଙ୍କର 'ଗୀତା', ରାମଗାଥାର 'ଭକ୍ତି ଗୀତା' ଓ ଭକ୍ତିବିନୋଦର 'ଗୋପୀ ଭକ୍ତି'ର ସମାହାର ଘଟିଛି । ଏଥିରୁ ସ୍ପଷ୍ଟ ହୁଏ ଯେ କବିଙ୍କର ମତାନ୍ଧତା ନଥିଲା ।

କବି ନିଜର ଭକ୍ତି ବିନୋଦରେ ପ୍ରେମ ଭକ୍ତିକୁ ମହତ୍ତ୍ୱ ଦେଇଥିବା ବେଳେ, ଏହି ରଚନାରେ ଯେଉଁ ଭକ୍ତି ଓ ଜ୍ଞାନର ସମନ୍ୱୟ କରିଛନ୍ତି ଏହା ପଞ୍ଚସଖା ସାଧନାରୂପ । କିନ୍ତୁ ଶେଷରେ କବି ଭାବ-ଭକ୍ତିକୁ ପ୍ରାଧାନ୍ୟ ନ ଦେଇ ରହିପାରି ନାହାନ୍ତି । ଏ ବିଷୟରେ ଆଗରୁ ମଧ୍ୟ କୁହାଯାଇଛି । (ପଦ ୭୧୭, ୭୨୨-୭୨୩, ୭୨୭-୭୨୮, ଓ ୭୪୮) । ନାନା ଭକ୍ତଙ୍କର

ଉଦାହରଣରେ କବି ଏହାର ପ୍ରମାଣ ଉପସ୍ଥାପିତ କରାଇଛନ୍ତି । ଭଗବାନଙ୍କର ଅହେତୁକୀ କୃପା ବିନା ଏ ସଂସାରରେ କୌଣସି ସାଧନା ସମ୍ଭବ ନୁହେଁ, ଏହାର ଉଦ୍‌ଘୋଷ କବି ଏହି କାବ୍ୟର ପ୍ରତ୍ୟେକ ସ୍ଥଳରେ କରିଛନ୍ତି—

ତ୍ରୈଲୋକ୍ୟର ନାଥ ମୋତେ ଦୟା କଲେ ।
ମାଣିକୋଠଠାରୁ ଉଦ୍ଧାରି ଆଣିଲେ । ୭୪୮ ।

କୃପାସିନ୍ଧୁ ନାମ ଜଗତେ ପ୍ରକାଶ ।
ସଦୟେ ହୋଇଣ ଦୁଃଖକଲେ ନାଶ । ୭୪୯ ।
ଜଗତ ସୋଦର ଦୀନଜନବନ୍ଧୁ ।
ଦୁଃଖି ଜନବନ୍ଧୁ କୃପାମୟ ସିନ୍ଧୁ । ୭୫୦ ।
ଆରତ ଭଞ୍ଜନ ଜଗତ ସୋଦର ।
ଦୁଃଖି ଜନବନ୍ଧୁ କରୁଣା ସାଗର । ୭୫୧ ।
ଆରତ ଭଞ୍ଜନ ଯଶୋଦାଙ୍କ ବଳା ।
ଭବ ସାଗରୁ ଉଦ୍ଧରିଲ ମୋ ଭେଳା । ୭୫୨ ।

ଗୋବିନ୍ଦ ଭଞ୍ଜ ଅନେକ ସ୍ଥଳରେ ଅବତାର ମାନଙ୍କର ବର୍ଣ୍ଣନା କରିଛନ୍ତି । ପଦ ୩୫୨ ଠାରୁ ୩୯୮ ଭିତରେ ବିଭିନ୍ନ କଳ୍ପରେ ଉଣେଇଶିଟି ଅବତାରର ବର୍ଣ୍ଣନା ସଂକ୍ଷେପରେ ହୋଇଛି । ଯଥା— କୁମାର, ବରାହ, ନାରଦ, ନର-ନାରାୟଣ, କପିଳ, ଦତ୍ତାତ୍ରେୟ, ଋଷଭ, ପୃଥୁ, ପୁରୁଷୋତ୍ତମ ମତ୍ସ୍ୟ, ଦେବକଚ୍ଛପଧର, କୂର୍ମ, ଧନ୍ୱନ୍ତରୀ, ମୋହିନୀ, ବାମନ, ପରଶୁରାମ, ପରାଶର-ପୁତ୍ର ଓ ଶ୍ରୀରାମ । ସେହିପରି ପଦ ୪୨୩ ଠାରୁ ୪୩୩ ମଧ୍ୟରେ ବଉଦ (ବୌଦ୍ଧ) ଓ କଳ୍କୀ । ଅବତାରର ବର୍ଣ୍ଣନା ହୋଇଛି । ପଦ ୪୯୪ ଠାରୁ ୫୦୭ ମଧ୍ୟରେ ଭଗବାନଙ୍କର ନାନା ନାମ ଓ ଅବତାରର କଥିତ ଆଖ୍ୟାନ ପୁନଃ ଦିଆହୋଇଛି । ଭଗବାନଙ୍କ ଅଶେଷ ନାମ ମଧ୍ୟରୁ କବି ମୁକୁନ୍ଦ, ମୁରାରି, ମଧୁସୂଦନ, ଦଇତାରି, ନାରାୟଣ, ବାସୁଦେବ, ପରମାନନ୍ଦ, ହରି ଓ ଗୋପୀନାଥ, ନାମକୁ ସ୍ମରଣ କରିଛନ୍ତି । କାବ୍ୟର ଶେଷ ଭାଗରେ ପଦ ୭୫୮ ଠାରୁ ୮୦୦ ଭିତରେ କୃଷ୍ଣ, ନରସିଂହ, ରାମ, ଆଦି ନାମୋଲ୍ଲେଖ କରି, କବି ଭକ୍ତିର ମହତ୍ତ୍ୱ ବର୍ଣ୍ଣନା କରିଛନ୍ତି ।

ଅବତାରର ଏହି ବର୍ଣ୍ଣନାକୁ ଗୁଢ଼ ରାମକଥା ଓ କୃଷ୍ଣ କଥାର ଉଲ୍ଲେଖ ଓ ବ୍ୟାପକ ଚିତ୍ରଣ ମଧ୍ୟ ଏଥିରେ ଦେଖିବାକୁ ମିଳେ । ୧୧୭ ଟି ପଦରେ କୃଷ୍ଣ କଥା ବିଷୟକ ଭକ୍ତିର ଉଲ୍ଲେଖ କରାଯାଇଛି । (ପଦ ୩୧-୧୪୮, ରାମ ବିଷୟକ) ଓ (ପଦ ୧୪୯-୨୫୧, ୩୬୭-୩୭୯, ୪୦୫-୪୧୭, ୪୩୭, ୪୪୦, ୭୦୮-୭୬୦ କୃଷ୍ଣ ବିଷୟକ) ।

କବିଙ୍କ ଭକ୍ତିରେ ଏହା ଲକ୍ଷ୍ୟ କରାଯାଇ ପାରେ ଯେ ନବଧା ଭକ୍ତିରୁ ସେ ପାଦ ସେବନକୁ ବିଶେଷ ଭାବରେ ଗୁରୁତ୍ୱ ଦେଇଛନ୍ତି । ଶ୍ରୀଚରଣରେ ସେବାର ମହତ୍ତ୍ୱ ଗାନ କରିବାରେ ସେ ଏକ ନିଷ୍ଠ ଅଟନ୍ତି । ବଲ୍ଲଭାଚାର୍ଯ୍ୟଙ୍କ ବିରଚିତ "ସିଦ୍ଧାନ୍ତ ରହସ୍ୟ"ରେ ପାଦ ସେବନ ବିଷୟରେ କୁହା ଯାଇଛି—

"ସେବକାନାଂ ଯଥା ଲୋକେ ବ୍ୟବହାରଃ ପ୍ରସିଧ୍ୟତି ।
ତଥା କାର୍ଯ୍ୟଂ ସମର୍ପ୍ୟୈବ ସର୍ବେଷାଂ ବ୍ରହ୍ମତା ତତଃ ॥"

୧୭ : ଶ୍ଳୋକ ୭-୮, ଅଷ୍ଟଛାପ ଓ ବଲ୍ଲଭ ସଂପ୍ରଦାୟ ପୃ-୫୬୮

ଠିକ୍ ସେହିପରି ଗୋବିନ୍ଦ ଭଞ୍ଜଙ୍କ ଜୀବନ ଓ ଭକ୍ତିରେ ସେବାଭାବ ସର୍ବ-ସମର୍ପଣ ଆଦି ଭାବମାନ ମୂଳ ! ଜଗନ୍ନାଥ ଦାସ ମଧ୍ୟ ନିଜର ଭାଗବତରେ ଏହି ଶ୍ରୀଚରଣର ଆଶା ଓ ବିଶ୍ୱାସକୁ ମୂଳ ମାନିଥିବା ଦେଖାଯାଏ—

"ଏଣେ ଗୋବିନ୍ଦ ପାଦେ ରସ । ଭଣିଲା ଜଗନ୍ନାଥ ଦାସ" ॥
"ହରି ଚରଣେ କରି ଆଶ । କହଇ ଜଗନ୍ନାଥ ଦାସ" ॥
"ହରି ଚରଣେ ଦେଇ ଚିତ୍ତ । କହଇ ଦାସ ଜଗନ୍ନାଥ" ॥

-ଭାଗବତ-ତୃତୀୟ ସ୍କନ୍ଧ

"ସେ ହରି ଚରଣ କମଳେ । ଚିତ୍ତ ମୋହର ଭୃଂଗ ମେଳେ" ॥
"ହରି ଚରଣେ ଦିଅ ମନ । ସେ ହରି ବିଷୟ ମୋଚନ" ॥
"ଚିତ୍ତ ନିବେଶି କୃଷ୍ଣପାଦେ । ନ ବୁଡ଼ୁ ଭବ ଜଳ ମୋହେ" ॥

-ଭାଗବତ : ଦଶମ ସ୍କନ୍ଧ

"ଭକତି କରି ମୋର ପାଦେ । ମୋତେ ପାଇବ ଅପ୍ରମାଦେ" ॥

-ଭାଗବତ : ଏକାଦଶ ସ୍କନ୍ଧ ୩୯-୪୨

ଆଉ ଏକ କଥା । କବି ଯୋଗମାର୍ଗକୁ ଏହି ଭକ୍ତିର ଏକ ସୋପାନ ରୂପେ ଗ୍ରହଣ କରିଛନ୍ତି ! ଯୋଗମାର୍ଗରେ ଭକ୍ତ ସାଧନା କରି ପାରେ, କିନ୍ତୁ ବିନା କୃପାରେ ସେଠାରୁ ମୁକ୍ତି ମିଳିବା ସମ୍ଭବ ନୁହେଁ ।

## (ଗ) ଜ୍ଞାନ ଓ ଯୋଗ :

ବିଷୟ ବିଶ୍ଳେଷଣରେ ଦେଖା ଯାଉଛି ଯେ ଏହି ବିଷୟକ ପଦ ଗୁଡ଼ିକ ବିଶିଷ୍ଟ ଭାବରେ ହିଁ ସନ୍ନିବିଷ୍ଟ । କବି ସ୍ପଷ୍ଟ ଢଙ୍ଗରେ ଏହାକୁ ମାର୍ଗ କହିଛନ୍ତି ଓ ନିଜର ଅସହାୟାବସ୍ଥାରେ ଏଥିରୁ ଉଦ୍ଧାର କରିବା ପାଇଁ ପ୍ରଭୁଙ୍କୁ ନିବେଦନ କରିଛନ୍ତି ।

"ଭଞ୍ଜ ଗୋବିନ୍ଦକୁ ବାରେକ ଉଦ୍ଧାର ।
ମାଣିକୋଠ ଠାରୁ ଉଦ୍ଧରି ଧର" । ୪୦୦ ।

"ମହା ଭୟ ଚିତ୍ତେ ଡ଼ାକୁଛି ତୁମ୍ଭଙ୍କୁ
ମାଣି ଠାରେ ଡ଼ରେ ଜୀବନ ଯିବାକୁ" । ୪୪୯ ।

"ଏବେ ଶ୍ରୀହରି ମୁଁ କବ ବୁଦ୍ଧି କରିବି
ମଣିକୋଠ ଠାରୁ କେମନ୍ତେ ତରିବି" । ୪୫୪ ।

"ନାମ ଯେ ବହିଛି ଜଗତ ସୋଦର
ମାଣିର ଭିତରୁ ଉଦ୍ଧାରଣ ଧର" । ୪୬୮ ।

'ମାଣି'ର ଅର୍ଥ 'ଅହଂକାର' ଅହଂକାରର ଦୁର୍ଗରେ ବନ୍ଦୀ ହେବାଠାରୁ ଦୁଃଖ ନାହିଁ । ଯୋଗମାର୍ଗକୁ କବି ଅହଂକାରର ମୂଳ ବୋଲି ମାନିଛନ୍ତି । ସେଥିପାଇଁ ପ୍ରଭୁଙ୍କୁ ସେଠାରୁ ମୁକ୍ତିପାଇଁ ପ୍ରାର୍ଥନା କରିଛନ୍ତି । ପ୍ରଭୁ ରହି ପାରିଲେ ନାହିଁ । ସେ ମାଣିକୋଠ ଠାରେ ଗୋବିନ୍ଦ ଭଞ୍ଜଙ୍କୁ ଦର୍ଶନ ଦେଲେ — ଓ ଅଭୟ ବାଣୀ ଶୁଣାଇଲେ ।

"ମାଣିକୋଠେ ହରି ଦରଶନ ଦେଲେ
କୁହୁକ ଗ୍ରହେ କି ଚନ୍ଦ୍ରମା ଉଇଁଲେ । ୪୭୬ ।

ମୋହବନା ସସାରେ କେହି ନାହିଁ ।
ମାଣିଠାରେ ଥିବା ଡୁରୁ ଭାଙ୍ଗି ଯାଇଁ ।୫୩୦।

ମୋ ଚରଣେ ଚିତ୍ତ ନିରନ୍ତେ ଖଟାଇ ।
ମାଣିଠାରେ ନାମ ଜପ କର ତୁହି ।୫୩୬।

ମାଣିଠାରେ ସର୍ବେ ମନ୍ତ୍ର ଜପ କର ।
ମୋ ନାମ ନିରତେ ହୃଦୟେ ସୁମର ।୫୪୨।

ପ୍ରଥମ ଓଁକାର ଉଚ୍ଚର କରିବୁ ।
ଶ୍ରୀ ମଧୁସୂଦନ ନାମ ଉଚ୍ଚାରିବୁ ।୭୦୪।
ଜପୁ ମଧୁସୂଦନ ବୋଲିବୁ ଯେବେ ।
ସମ୍ପୂର୍ଣ୍ଣରେ ମନ୍ତ୍ର ହୋଇବାକ ତେବେ ।୭୦୫।
ଯେବେ ତୁ ଜପିବୁ ହୃଦଗତେ ଧରି ।
ମାଣିକୋଠ ଠାରୁ ହୋଇବାକ ପାରି ।୭୦୬।

ମାଣିକୋଠର କଷ୍ଟ, ଅସୁବିଧା, ଓ ଅନ୍ଧକାରକୁ ପ୍ରଭୁ କ୍ଷଣକେ ଦୂର କରିପାରିଲେ ଏହାହିଁ ତାଙ୍କର ଅହେତୁକୀ କୃପା !

ନାରପୂଣ ଜଗନ୍ନାଥ ଦଇତାଙ୍କ ।
ମାଣିକୋଠ କଷ୍ଟ କ୍ଷଣକେ ନିବାରି ।୭୭୪।
ଦର୍ଶନ ଦେଇଣ ଜ୍ଞାନ ଦେଲେ ମୋତେ ।
ମନ୍ତ୍ର ଯନ୍ତ୍ର ବୁଦ୍ଧି କଣ୍ଠ ଦେଲେ ଯେତେ ।୭୭୫।

ଯୋଗ ପରଳ ଉକ୍ତିରେ ଗୋବିନ୍ଦ ଭଞ୍ଜ ଅନେକ ଗୂଢ଼ ଏ ପଦରେ ମନ୍ତ୍ର-ଜପ ଅଜପା ଓ ନାମ ଜପର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି —

"ମନ୍ତ୍ର ଜପ କଲେ ନିଷ୍ପାପୀ ହୋଇବୁ ।
ରାଜା ହୋଇଣ ତୁ ରାଜ୍ୟକୁ ପାଳିବୁ ।୪୯୧।

"ମନ୍ତ୍ର ଉପଦେଶ ଦେଲଇଁ ମୁଁ ତୋରେ ।
ହୃଦଗତେ ଭାବ ଲଭିବୁ ମୋହରେ ।୫୪୧।

"ଅଜପା ଧ୍ୟାଇବୁ ଯେବେ ହୋ ରାଜନ ।
ଆତ୍ମା ସଙ୍ଗେ ଭେଟ ହୋଇବୁ ତୁ ପୁଣ ।୫୫୯।
ଅମାପ ମାପିବା ଶୁଣ ତାର ବିଧି ।
ହଂସ ଦୁଇ ନେଇ ରଖ ଦୁଇ ସନ୍ଧି ।୫୬୦।
ମନ ନୟନକୁ ଦୃଢ଼ ରୂପେ ଧରି ।
ନାସିକା ପବନ ଊର୍ଦ୍ଧ୍ୱଗତ କରି ।୫୬୧।
ଚନ୍ଦ୍ର ଘରେ ସୂର୍ଯ୍ୟ କରିବୁଟି ବନ୍ଦ ।
ସୂର୍ଯ୍ୟ ଘରେ ଚନ୍ଦ୍ର ଦୃଢ଼ ରୂପେ ବନ୍ଧ ।୫୬୨।
ଉଜାଣିରେ ସାଧି ଶ୍ୱାସ ଯେ ପବନ ।
ପଞ୍ଚସ ପ୍ରକୃତି, ପଞ୍ଚମ ପରାଣ ।୫୬୩।
ପରମ ଆତ୍ମା ପାଶରୁ ଯେବେ ଚିହ୍ନି ।
ସିଦ୍ଧ ହୋଇବୁ ତୁ ଏହି ଦେହ ଘେନି ।୫୬୪।

ଏହାରି ଭିତରେ ହଠଯୋଗ ପରକ କ୍ରିୟା, ଅଙ୍ଗ ପ୍ରତ୍ୟଙ୍ଗର ବିସ୍ତର, ଶରୀର-ଭେଦ, ଆଦିର ଉଲ୍ଲେଖ ବିସ୍ତୃତ ଭାବରେ ମିଳେ । ହଠଯୋଗ ବିଷୟକ ପ୍ରତ୍ୟେକ ଅଙ୍ଗ ଓ ଅଂଶର ନାମ ଓ କ୍ରିୟାର ବର୍ଣ୍ଣନା ଏହି ରଚନାର ୬୫ ଟି ପଦରେ ହୋଇଛି (ପଦ ୫୬୯ ଠାରୁ ୬୩୩) । ଏଥିରେ ଚକ୍ର, ହାଡ଼, ତ୍ରିବେଣୀ, ସପ୍ତପାତାଳ, ଚଉରସି କୋଠି, ତ୍ରିକୂଟ, ମେରୁ, ସହସ୍ରଦଳ, ଶୂନ୍ୟପୁର, ସରୋବର ଆଦିର ଉଲ୍ଲେଖ ମିଳେ । ସାଧନାର ସଫଳତା ବିଷୟରେ କହିବାକୁ ଯାଇ ସେ କହିଛନ୍ତି—

"ଯେଉଁ ବୃକ୍ଷମୂଳ ଅଟେ ଆଦିମୂଳ ।
ପାଣି ଦେଇ ତାକୁ କରହୋ ଶୀତଳ ।୬୦୭।

ବୃକ୍ଷ ପରେ ଅଛି ବିହଙ୍ଗମ ବସା ।
ଉଡ଼ି ଯିବାକୁ ପୁଣି ଲୋଡ଼ଇ ହଂସା ।୬୦୮।

ପବନ ଗଲେ କାୟା ନିର୍ମଳ ହୋଇ ।
ଭ୍ରମର ରସଇ କମଳରେ ପାଇଁ ।୬୦୯।

ଭ୍ରମର କମଳ ଏକହିଁ ଯେବେ ।
ଜଦ୍ରୁଛି ଗୋବିନ୍ଦ ସାଧିବୁଟି ତେବେ । ୭୧୦ ।
ଏକା ପବନକୁ ପାରିଲେ ନିରୋଧି ।
ହଂସା ଯେ ପଡ଼ିବ ସରୋବରେ ବନ୍ଦୀ । ୭୧୨ ।

କିନ୍ତୁ ଏହି ହଠଯୋଗର ବର୍ଣ୍ଣନା ପରମ୍ପରାଗତ ହଠଯୋଗ ଠାରୁ କିଞ୍ଚିତ ଭିନ୍ନ ! ମୂଳ କଥା ଯେ ଏହା ପ୍ରାଣାୟାମ ପରକ ଓ କୁଣ୍ଡଳୀ ସାଧନା ଯୁକ୍ତ । ସହସ୍ରାରରେ ହିଁ ଜ୍ଞାନ ପ୍ରାପ୍ତ ହୁଏ । ଶୂନ୍ୟ ଭିତରେ ସୁବର୍ଣ୍ଣ ଠାରୁ ବସ୍ତୁ ଭିକ୍ଷା ମାଗିବା ବାଞ୍ଛନୀୟ — କାରଣ ସେହି ହେଉଛି ଜୀବନର ଏକାନ୍ତ ସଖା —

"ଆଜ ଦ୍ରବ୍ୟ ଯେତେ ନୁହଇ ସେ ଲେଖା ।
ପବନର ଭିକ୍ଷା ଜୀବନକୁ ସଖା । ୭୨୪ ।

ଗ୍ରନ୍ଥି ହେଉଛି ଦେହର ବନ୍ଧନ, ତାକୁ ଲୁଚାଇ ପାରିଲେ ବା ବ୍ରହ୍ମ ଅନଳରେ ପୋଡ଼ି ପାରିଲେ ମୁକ୍ତି ମିଳେ —

"ଦେହର ବଇରି ଅଟଇ ଯେ ଗ୍ରନ୍ଥି ।
ତାହା ଯେବେ ଗୋବିନ୍ଦ ପାରିବୁ ଲୁଚାଇ । ୭୬୮ ।
"ବ୍ରହ୍ମ ଅନଳରେ ଗ୍ରନ୍ଥି ଯେବେ ପଡ଼ି
ଦେଉଳରୁ ଯିବ ଜୀବନଟି ଛାଡ଼ି । ୭୭୪ ।

କିନ୍ତୁ ରାଜା ଗୋବିନ୍ଦ ଭଞ୍ଜ ଏ ସବୁ ଜ୍ଞାନ ବାଣୀ ପ୍ରଭୁଙ୍କଠାରୁ ଶୁଣି ସାରିଲା ପରେ ମଧ୍ୟ ସାଧନାରେ ସଫଳତା ପାଇ ପାରିଲେ ନାହିଁ । କାରଣ ଏ ସବୁ ସାଧନା କର୍ମକାଣ୍ଡ ପରକ ଓ ଏଥିରେ ପ୍ରଭୁ କୃପାର ଆବଶ୍ୟକତା ଥିଲା । ଅନ୍ତହୃଦୟରୁ ଗୋବିନ୍ଦ ଭଞ୍ଜ ସେଥି ପାଇ ପ୍ରଭୁ କୃପାର ଆଶାରେ ଶ୍ରୀଚରଣରେ ଭକ୍ତି କରିଛନ୍ତି । ଏକ ଆଡ଼େ ଯୋଗ କ୍ରିୟାର ନିଃସାରତା ଏହା ଦ୍ୱାରା ପ୍ରତିପାଦିତ ହୋଇଛି ଓ ଅନ୍ୟ ଆଡ଼େ ଅହେତୁକୀ ଭକ୍ତିର ମହିମା ବିସ୍ତାରିତ ମଧ୍ୟ ହୋଇଛି । ଏ ସବୁଥିରେ କବିଙ୍କର ପ୍ରତ୍ୟକ୍ଷ ଅନୁଭୂତି ଏକ ସାଧକର ଅନୁଭୂତ ଅଟେ । ସାଧନାରେ ହାରିଯାଇ ମଧ୍ୟ କବି ଗୌରବାନ୍ୱିତ । ଏହି ଜ୍ଞାନ ମାର୍ଗ ଭକ୍ତିର ଆଶ୍ରିତ, ସ୍ୱତନ୍ତ୍ର ନୁହେଁ । ହିନ୍ଦୀ କବି କବୀର ଯେପରି ଜ୍ଞାନ ମାର୍ଗରେ ଥାଇ ମଧ୍ୟ ପ୍ରେମ ଭକ୍ତିର ପୂଜକ

ସେହି ପରି ଗୋବିନ୍ଦ ଭଞ୍ଜ ମଧ୍ୟ । ପରୋକ୍ଷରେ ଏହି ରଚନାରେ କର୍ମକାଣ୍ଡ-ପରକ ଭକ୍ତିମାର୍ଗର ଖଣ୍ଡନ ହିଁ କରି ଯାଇଛନ୍ତି ।

## ଭଗବାନଙ୍କର ବିରାଟ ରୂପ—

ଗୋଟିଏ ସ୍ଥଳରେ କବି 'ଗୀତା' ଅନୁରୂପ ଭଗବାନଙ୍କର ବିରାଟ ରୂପର ଚିତ୍ରଣ କରିଛନ୍ତି—

"ସହସ୍ରେ ପାଦ ସହସ୍ରେ ଉରୁ ଭୁଜ ।
ଶିର ବଦନ ନାସା ସହସ୍ରେ ତେଜ । ୩୪୮ ।
ସହସ୍ରେ ଲୋଚନ ସହସ୍ରେ ଶ୍ରବଣ ।
ବସନ କୁଣ୍ଡଳ ଅସଂଖ୍ୟ ଭୂଷଣ । ୩୪୯ ।

## ଭାବସାମ୍ୟ—

ଯଶୋବନ୍ତ ଦାସଙ୍କ ରଚିତ 'ଦିବ୍ୟଦେହବୋଲି' ଓ ବଳରାମ ଦାସଙ୍କ 'ଉଦ୍ଧବଗୀତା'ର 'ପାଦ' ବର୍ଣ୍ଣନା ଅନ୍ତର୍ଗତ କେତୋଟି ପଦ ସଙ୍ଗରେ ଶ୍ରୀଚରଣ ସୁଧାନିଧିର ସାମ୍ୟ ଲକ୍ଷ୍ୟ କରି ଯାଇପାରେ । ନିମ୍ନରେ ପାଦର ଆଶ୍ରା ନେଇ ଯେଉଁମାନେ ତରି ଯାଇଛନ୍ତି ତାହାର ବର୍ଣ୍ଣନା ସାମ୍ୟ ଦେଖାଯାଉ—

"ଯେଉଁ ପାଦ ଲାଗି ବଳି ଛଳିଲା । ଯେଉଁ ପାଦେ କୁବୁଜା ନିସ୍ତରିଲା ॥
ଯେଉଁ ପଦେ ଆଶ୍ରେ କରି ବିଦୁର । ଖୁଦେ ତୋଷିଲେ ପ୍ରଭୁଙ୍କ ଉଦର ॥
ଯେଉଁ ପାଦ ପଦ୍ମ ଧ୍ରୁବ ଚିନ୍ତିଲା । ଜନ୍ମ ଜନ୍ମାନ୍ତର ବ୍ୟାଧି ହରିଲା ॥
ଯେଉଁ ପାଦେ ପ୍ରହ୍ଲାଦ ଶରଣ । ଜଳ ଅଗ୍ନି ଆତପେ ଅମରଣ ॥
ଯେଉଁ ପାଦ ଅଙ୍ଗିର ଆରାଧିଲା । ଯେଉଁ ପାଦେ ଉଦ୍ଧବ ସଂପାଦିଲା ॥
ଯେଉଁ ପାଦ ଦ୍ରୁପଦୀ ମନେ ଧ୍ୟାନ । ଯେଉଁ ପାଦ ପାଣ୍ଡବଙ୍କ ଜୀବନ ॥
ଯେଉଁ ପାଦେ ବିଭୀଷଣ ମୁକତି । ଲଙ୍କା ଗଡର ଏକା ଚକ୍ରବର୍ତ୍ତୀ ॥
ଯେଉଁ ପାଦ ଲଗନ୍ତେଣ ପଥର । ଦେଖ ଅହଲ୍ୟା ମୁକତି ଭକ୍ତର ॥
ଯେଉଁ ପାଦ ବିରୂପାକ୍ଷ ଚିନ୍ତିଲା । ଠୁଳ ଶୂନ୍ୟ ଏକ କରି ଦେଖିଲା ॥
ଯହିଁ ଦେଖିଲା ଅପୂର୍ବ ମୂରତି । ବିରୂପାକ୍ଷ ହିଁ ଲଭିଲା ମୁକତି ॥
ଯେତେ ବ୍ରତ ତୀର୍ଥଟି ଦାନ ପୁଣ୍ୟ । ଯେତେ ସାଧନା ବିଧି ବ୍ରହ୍ମଜ୍ଞାନ ॥
ଯେତେ ଗୁରୁ ବଚନ ଉପଦେଶ । ସବୁ ଏହୁ ଦିବ୍ୟ ଦେହୁ ପ୍ରକାଶ ॥
( ପଦ ୧୩୭-୧୪୫, ୧୫୦-୧୫୩ )

ଦିବ୍ୟ ଦେହ ବୋଲି : ସମ୍ପାଦକ—ଡ଼ଃ କୃଷ୍ଣଚରଣ ସାହୁ

ଶେଷରେ କବି ଯଶୋବନ୍ତ କହିଛନ୍ତି—

ହରିଚରଣ ଠାରୁ ଚିତ୍ତ ଯାଏ । ଯାର ମନ ପଶିଲା ଏଥି ଦେହେ ।।
ତାଙ୍କୁ ପରମ ପ୍ରକାଶ ଦିଶଇ । ନଦୀ ସମୁଦ୍ରେ ଯେସନେ ମିଶଇ ।।

ପଦ—୧୭୩-୧୭୪ ହରିଦାସ ଦେହ ବୋଲି

ବଳରାମ ଦାସଙ୍କ 'ଉଦ୍ଧବ ଗୀତା'ରେ ମଧ୍ୟ ଏହି ପାଦ ମହିମାର ସାମ୍ୟ ମଧ୍ୟ—

ଯେଉଁ ପାଦ ମହିମା ନ ପାରେ ବେଦ କହି ।
ଯେଉଁ ପାଦ ଆଶ୍ରେ କରି ଗଙ୍ଗା ଦେବୀ ରହି ।।
ଯେଉଁ ପାଦ ଜାଳିକି ଅଭୟ ବର ଦେଲା ।
ଯେଉଁ ପାଦ ବଳି ରଜାକୁ ପାତାଳେ ଚାପିଲା ।।
ଯେଉଁ ପାଦ ଅହଲ୍ୟାକୁ କଲାକ ମୁକତା ।
ଯେଉଁ ପାଦୁ ମହାଲକ୍ଷ୍ମୀ ନ କରନ୍ତି ହସ୍ତ ।।
ଯେଉଁ ପାଦ ଧଇଲେ ସେ ବ୍ରହ୍ମ ପଦେ ରହେ ।
ଯେଉଁ ପାଦ ଉଦେକକୁ ଶଙ୍କର ଶିରେ ବହେ ।।
ଯେଉଁ ପାଦ ସାତ ଦୀପ ସାତ ସିନ୍ଧୁ ଘୋଟି ।
ଯେଉଁ ପାଦ ବ୍ରହ୍ମାଣ୍ଡ କପର ଗଲା ଫୁଟି ।।
ଯେଉଁ ପାଦ ଗୟାରେ ପ୍ରେତକୁ ମୋକ୍ଷ କରି ।
ଯେଉଁ ପାଦ ଦୁନ୍ଦୁଭି ଦଇତ୍ୟ ଦୁଃଖ ହରି ।।
ଯେଉଁ ପାଦ ଯାମଳ ଶକଟା ଭଗ୍ନ କଲା ।
ଯେଉଁ ପାଦ ପ୍ରଳେ କାଳେ ଆପଣେ ଚୁମ୍ବିଲା ।।
ଯେଉଁ ପାଦକୁ ଜନେକ ପଞ୍ଚାମୃତ କରି ।
ଯେଉଁ ପାଦ ମଞ୍ଜୁଳ ହନୁମନ୍ତ ହି ନ ମରି ।।
ଯେଉଁ ପାଦ ଯୋଗୀ ଜନେ ହୃଦେ ଚିନ୍ତା କରି ।
ଗୋପୀମାନେ ସେ ପାଦ ମର୍ଜିଲେ କରେ ଧରି ।।
ହୃଦୟ ଉପରେ ପଦ ଥୁଇଲେ ସନ୍ତତ ।
ଏ ଗୋପୀଙ୍କି ଦେଖିଲେ ଗୁଚଇ ମହାପାପ ।।

ଉଦ୍ଧବଗୀତା : ପଞ୍ଚମ ଅଧ୍ୟାୟ ଗୀତ (୧୩-୧୮)
(ସଂପାଦକ : ଡଃ କୃଷ୍ଣଚରଣ ସାହୁ) ପୃ ୨୭-୨୮

ସେତିକି ନୁହେଁ ଯଶୋବନ୍ତ ଦାସ ଓ ବଳରାମ ଦାସ ଭକ୍ତ ଓ ଗୋପୀମାନଙ୍କର ପାଦଧୂଳିକି ମଧ୍ୟ ମହତ୍ତ୍ୱ ଦେଇଛନ୍ତି :—

ତାଙ୍କ ପାଦ ଧୂଳିକି ମୋର ଆଶ ।
ଅଣ ଅପ୍ରାଧୀ ଯଶୋବନ୍ତ ଦାସ ।।

ଦିବ୍ୟ ଦେହ ବୋଲି : ୧୭୮

ଏ ଗୋପୀଙ୍କ ପାଦଧୂଳିକି ମୋର ନମସ୍କାର ।
ଧନ୍ୟ ଧନ୍ୟ ବୋଲିଣ ପ୍ରଶଂସଇ ସେ ଅପାର ।।
ଅଧର୍ମ ହୋଇଲେ ତ ଏହାଙ୍କଂ ନାହିଁ ଆନ ।
ଏହାଙ୍କୁ ହିଁ ଏଡ଼େ ଦୟା କଲେ ଭଗବାନ ।।

ଉଦ୍ଧବଗୀତା : ୫ମ ଅଧ୍ୟାୟ : (୧୯)

ତୁଏତ ଏହା ହୋଇ ପାରେ ଯେ ଏକ କବିର ଆରେକ ଉପରେ ପ୍ରଭାବ ପଡ଼ିଥିବ । କିନ୍ତୁ ଏପରି ସାମ୍ୟକୁ ପ୍ରଭାବ ବୋଲି ନ ଭାବି ଭାବ-ସାମ୍ୟ ବା ଚିନ୍ତନ-ସାମ୍ୟ କହିବା ଉଚିତ । ସ୍ୱତନ୍ତ୍ର ଭାବରେ ଦୁଇ ବା ତତୋଧିକ କବି ମାନଙ୍କ ରଚନାରେ ଭାବର ସାମ୍ୟ ରହିବା ଅସ୍ୱାଭାବିକ ନୁହେଁ ।

## (ଘ) ଭାଷା

ଶ୍ରୀ ଚରଣ ସୁଧାନିଧିର ଭାଷା ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀର ଭାଷା ଅଟେ । ପ୍ରକୃତରେ ଆଜିକାଲିର ଓଡ଼ିଆ ଓ ସେ କାଳର ଓଡ଼ିଆରେ ମଧ୍ୟ କେତେ ଗୁଡ଼ିଏ ସାମାନ୍ୟ ବ୍ୟାକରଣ ଓ ଉଚ୍ଚାରଣଗତ ଭେଦ ଛଡ଼ା ତାତ୍ତ୍ୱିକ ଭେଦ ନାହିଁ । ପୋଥିମାନଙ୍କରେ ଲିପିର ଲିଖନ ଶୈଳୀର ଭିନ୍ନତାକୁ ମୂଳ କବିର ବୋଲି ଅଧିକାର ପୂର୍ବକ କହିବା ସମ୍ଭବ ନୁହେଁ ।

ବଇଳା ଚରିତର ଭୂମିକାରେ କବିଙ୍କର ଭାଷା ବିଷୟରେ ବିଚାର କରିବାକୁ ଯାଇ ୰ପଣ୍ଡିତ ବିନାୟକ ଆଚାର୍ଯ୍ୟ ଲେଖିଛନ୍ତି—"ଏଥିରେ ପ୍ରଯୁକ୍ତ ଭାଷା ସ୍ଥାନେ ସ୍ଥାନେ ବ୍ୟାକରଣ ଦୁଷ୍ଟ ଅଟେ । ପ୍ରାୟଃ ସାଢ଼େ ଚାରିଶହ ବର୍ଷ ତଳେ ଅର୍ଥାତ୍ ଓଡ଼ିଆ ସାହିତ୍ୟର ପୌଗଣ୍ଡ ଅବସ୍ଥାରେ ରଚିତ ଏହି କାବ୍ୟରେ ଏ ପ୍ରକାର ଅଶୁଦ୍ଧି ରହିବା ଯେ ଅତି ସ୍ୱାଭାବିକ

ଏଥିରେ କେହି ଅମତ ହେବେ ନାହିଁ । (ପୃ-୩) କିନ୍ତୁ ମୋ ମତରେ ଏହି ଭାଷାକୁ ବ୍ୟାକରଣ ଦୁଷ୍ଟ କହିବା ଅପେକ୍ଷା ସେହି ସମୟରେ ଭାଷାର ବୈଶିଷ୍ଟ୍ୟ କହିବା ଅଧିକ ଯୁକ୍ତିଯୁକ୍ତ ।

ଆଜିର ଓଡ଼ିଆ ଠାରୁ ଭିନ୍ନ ଯେଉଁ ଶବ୍ଦାବଳୀ କବି ବ୍ୟବହାର କରିଛନ୍ତି ସେଥିରୁ କିଛି ଉଦାହରଣ ନିମ୍ନରେ ଦିଆଗଲା— 'ଅଭେ' ଅବତନ୍ୟ ଅସଂକ୍ଷ, ସ୍ୱେତ୍ତେ, ସ୍ୱେମନ୍ତ, କଉସିଲା, ଉପେଖିଲା, ଚାହ (ଚାହା ଅର୍ଥରେ) ଚତୁର୍ବର୍ଗ, ଯନକ, ବିସୟେ, ଯୋଷା, ଊଂସାଇ, ସୋଣ, ତନଇ, ଥାନ, ଦଇତ, ଦୂଗତି, ଦ୍ରୁଶନ, ଦ୍ରୀଘ, ଦ୍ରୁପତି, ଦୁଲଭ, ଦୁବୁଦ୍ଧି, ଦ୍ରୁହସିତ, ନୃପତି, ନଗ୍ର, ନ୍ୟନ୍ତ, ପ୍ରଶଧର, ପ୍ରାଶ୍ଚିତ, ପ୍ରସୁରାମ, ପାହାରି, ବସିଷ୍ଠେ, ବସ୍ୟାନର, ବ୍ରିତୁଳ, ବାସୁଦେବ, ଭଥ, ଭୋଗ୍ୟଥାନ, ଭଏ, ମୃତି, ଯୟେ, ନାଗି, ନଳୀତ, ସକ୍ଷ, ସରଣ, ସମୋଦ୍ର, ସହସ୍ରଘ୍ନ, ସାପୂ୍ୟ, ସୀତ୍ୟା, ସନ୍ୟ, ସ୍ନାହାନ, ସାହାସ୍ରେ, ସରଣ, ସଂକ୍ଷପ, ସଂକର, ସୋଡ଼ସ, ହୋଏ, କ୍ଷୟେ ।

ଉକ୍ତ ଶବ୍ଦ ଗୁଡ଼ିକରେ ଓ ଅନ୍ୟତ୍ର ମଧ୍ୟ ନିମ୍ନ ପ୍ରକାରର ବ୍ୟବହାର ଭେଦ ଦେଖାଯାଏ —

(କ) ରୁ ବଦଳରେ ରି ଯଥା—ବରୁଣ ବଦଳରେ ବରିଣ
ପୁରୁଷ ବଦଳରେ ପୁରିଷ

(ଖ) ର ବଦଳରେ ୍ର ଯଥା—ଭରତ ବଦଳରେ ଭ୍ରଥ

(ଗ) ର୍ ବଦଳରେ ୍ର ଯଥା—ବର୍ତ୍ତୁଳ ବଦଳରେ ବ୍ରିତୁଳ
ପର୍ଶୁ ବଦଳରେ ପ୍ରଶୁ
ଦୀର୍ଘ ବଦଳରେ ଦ୍ରୀଘ

(ଘ) ଲ ବଦଳରେ ନ ଯଥା – ଲାଗି ବଦଳରେ ନାଗି
ଲଳିତ ବଦଳରେ ନଳୀତ

(ଙ) ଲ ବଦଳରେ ର ଯଥା—ପ୍ରହ୍ଲାଦ ବଦଳରେ ପ୍ରହରାଦ

(ଚ) ଶ / ସ / ଷ ବଦଳରେ ସ/ଶ/ଖ ଯଥା—ଶଙ୍କର ବଦଳରେ ଶଙ୍କର
ଅଶେଷ ବଦଳରେ ଅସେସ
ଅଭିଷେକ ବଦଳରେ ଅଭିସେକ
ଅଭିଶେକ

(ଛ) ୃ ବଦଳରେ ୃ ଯଥା—ଦୁର୍ଗତି ବଦଳରେ ଦୃଗତ
ମୂର୍ତ୍ତି ବଦଳରେ ମୃତ
ଧ୍ରୁବ ବଦଳରେ ଧୃବ

(ଜ) ଣ ବଦଳରେ ନ ଯଥା—ଅରଣ୍ୟେ ବଦଳରେ ଅରନ୍ୟେ

(ଝ) କ୍ଷ ବଦଳରେ ଖ ଯଥା—ଦକ୍ଷିଣ ବଦଳରେ ଦଖିଣ
ଉପେକ୍ଷିଲା ବଦଳରେ ଉପେଖିଲା

(ଞ) ଦ ବଦଳରେ ଡ ଯଥା—ଦଂଶାଇ ବଦଳରେ ଡଂସଇ

(ଟ) ଜ ବଦଳରେ ଯ ଯଥା—ଜନକ ବଦଳରେ ଯନକ
ଜଗତ ବଦଳରେ ଯଗତ
ଉଜିଲେ ବଦଳରେ ଉପିଲେ

କ୍ରିୟାପଦ ଗୁଡ଼ିକର ବ୍ୟବହାର ନିମ୍ନ ପ୍ରକାର ହୋଇଛି—ହୋଏ, ଉଏ, ହେନ୍ତି, ପାବନ୍ତି ବୋଲନ୍ତି, ଗାବନ୍ତି, ବରଷନ୍ତି, ମିଶନ୍ତି, ଛଡବ, କରବ, କହଇ, ଅଟନ୍ତି, ଶୋହଇ, ମାଗଇ, ଲାଗଇ, ହୁଅଇ, କରଇ, କଲଇଁ, ଜନ୍ମିଲେ, ରମନ୍ତି, ରଚନ୍ତେ । କେତେ ଗୁଡ଼ିଏ ପ୍ରୟୋଗ ଛଡ଼ା ଅନ୍ୟ ସବୁର ଆଧୁନିକ ଓଡ଼ିଆରେ ବ୍ୟବହାର ଦେଖିବାକୁ ମିଳେ ।

ଅନ୍ୟ ବିଶେଷତ୍ୱ ନିମ୍ନ ଭାବରେ ଦେଖାଯାଇ ପାରେ—
'ବାନ' ଅର୍ଥରେ 'ବନ୍ତ' ର ପ୍ରୟୋଗ ଯଥା—ଭାଗ୍ୟବନ୍ତ, ବେଗବନ୍ତ, ଦେହବନ୍ତ । (ପଦ-୨୭,୪୪, ୧୨୨, ୧୩୮, ୪୨୯, ୪୩୦)
ବହୁବଚନ ପାଇଁ 'ନ୍ତ' ର ବ୍ୟବହାର—ଯଥା-ଅସୁରନ୍ତ (ପଦ-୮୯)
'ବାନ୍' ଅର୍ଥରେ 'ନ୍ତା' ର ବ୍ୟବହାର—ଯଥା-ଉଦ୍ଧାରନ୍ତା, କରନ୍ତା ।
'ଜନ୍' ଅର୍ଥରେ 'ଇନ୍'ର ବ୍ୟବହାର—ଯଥ -ଆରମ୍ଭିଲା
(ପଦ ୪୮୦, ୪୯୩, ୭୨୧, ୭୨୨)
'ପାଇଁ' ଅର୍ଥରେ 'କୁ' 'କ'ର ବ୍ୟବହାର—ଯଥା-ରହିବାକୁ, ଭେଟିବାକ, ହୋଇବାକ, ହାରିବାକ, ମାଗିବାକ, ଶୁଣିବାକୁ । ବଙ୍ଗଳା ଅନୁରୂପ 'କସିତେ'ର ପ୍ରୟୋଗ ମଧ୍ୟ ମିଳେ ।

କାରକ ପାଇଁ ବିଭକ୍ତି ପ୍ରୟୋଗରେ ଆଧୁନିକ ଓଡ଼ିଆଠାରୁ ଭିନ୍ନ ପ୍ରୟୋଗ ପରିଲକ୍ଷିତ ହୁଏ ନାହିଁ । ଏଥିରେ ବିଭକ୍ତି-ଜଡ଼ିତ ଓ ବିଭକ୍ତି-ସହିତ ଦୁଇ ପ୍ରକାରର ପ୍ରୟୋଗ ଦେଖିବାକୁ ମିଳେ ଯଥା ଯନକ ଦୁହିତା ଓ ସୁଗ୍ରୀବର, ଚରଣ ସେବି ଓ କଳନେ । କର୍ମକାରକରେ ସ୍ଥଳ ବିଶେଷରେ 'କୁ' ବଦଳରେ 'କି'ର ପ୍ରୟୋଗ ମଧ୍ୟ ମିଳେ ଯଥା- ଚୁକ୍ତିକି (ପଦ-୧୯୯) ।

କବି ଭକ୍ତ, ସେଥିପାଇଁ ଭାଷା ଆଡ଼ମ୍ବର ବର୍ଜନ, ବ୍ୟବହାରିକ ଓ ଅନ୍ତର୍ହୃଦୟର ଭାବ ବ୍ୟକ୍ତ କରିବାରେ ସମର୍ଥ । ଓଡ଼ିଆ ଭାଷାର ଯେଉଁ ରୂପ ଏଥିରେ ଦେଖିବାକୁ ମିଳେ ସେ ହେଉଛି ଜନସାଧାରଣର ଭାଷା— ସେଥିପାଇଁ ଅନେକ ଗୁଡ଼ିଏ ଶବ୍ଦର ସାହିତ୍ୟିକ ପ୍ରୟୋଗ ନ କରି, ଜନ— ଭାଷାରୂପର ପ୍ରୟୋଗ କବି କରିଛନ୍ତି—ଯଥା ଲାଗଇ—ନାଗଇ, ବର୍ତ୍ତୁଳ ବ୍ରର୍ତ୍ତୁଳ—ବ୍ରତୁଳ, ଦୈତ୍ୟ— ଦଇତ ।

ଭାଷାର ବିଶେଷତ୍ୱ :

୧ । ବିଷୟ ଭକ୍ତି ତଥା ପାଦ ବନ୍ଦନା ମୂଳକ ହୋଇ ଥିବାରୁ ଭାଷାରେ ଓଜ ବଦଳରେ ମାଧୁର୍ଯ୍ୟ ଓ ପ୍ରାସାଦ ଗୁଣ ହିଁ ଅଧିକ ।

୨ । ଭାବାନୁକୂଳ ଭାଷାର ପ୍ରୟୋଗ କରାଯାଇଛି ।

୩ । ଭାବପ୍ଲୁତ ହୋଇଥିବାରୁ କବି ଶବ୍ଦ ବ୍ୟବହାରରେ ଏତେ ଯତ୍ନବାନ ନୁହନ୍ତି । ଭାଷା ମଧ୍ୟ କୌଣସି ବିଶେଷ ଛନ୍ଦର ମାଧ୍ୟମ ଗ୍ରହଣ କରି ପାରି ନାହିଁ ।

୪ । କଥା-କଥନର ପ୍ରବାହ ବା ଗତି ଏହି ଭାଷାର ନାହିଁ ।

୫ । କବି ଆମ ସମ୍ମୁଖରେ ଆରମ୍ଭରୁ ଶେଷ ଯାଏ ଏକ ଭକ୍ତ ରୂପେ ଅଧିଷ୍ଠିତ ସେଥିପାଇଁ ଭାଷା ଚମତ୍କାରିତା ଏଠାରେ ଗୌଣ ।

(ଙ) ଛାନ୍ଦ—

ଭକ୍ତ ବିନୋଦ, ବଉଳା ଚରିତ ଓ ରାମଗାଥା ଆଦି ପୂର୍ବ ପ୍ରକାଶିତ କାବ୍ୟ ମାନଙ୍କରେ ଗୋବିନ୍ଦ ଭଞ୍ଜ ଚଉଦ ଅକ୍ଷର ଛନ୍ଦର ବ୍ୟବହାର କରିଛନ୍ତି ।

କିନ୍ତୁ ଶ୍ରୀଚରଣ ସୁଧାନିଧିର ଛନ୍ଦ ବାର ଅକ୍ଷର ଅଟେ । ଲକ୍ଷ୍ୟ କରିବା କଥା ଯେ ପଦ ୭୬୭ ଠାରୁ ୭୮୮ ସୁଦ୍ଧା, କେନ୍ଦୁଝର ଗଡ଼ ଠାରୁ ପ୍ରାପ୍ତ ହୋଇଥିବା ପୋଥିରେ ୧୪ ଅକ୍ଷର ଛନ୍ଦ ମିଳେ । ଉକ୍ତ ପଦ ଗୁଡ଼ିକର ୧୨ ଅକ୍ଷର ପାଠ ଭେଦ ପାଇ ଥିବାରୁ, ଏହି ୧୪ ଅକ୍ଷର ଛନ୍ଦକୁ ମୁଁ ଗ୍ରହଣ କରିପାରି ନାହିଁ । ତା ପରେ ଅର୍ଥ ଦୃଷ୍ଟିରୁ ମଧ୍ୟ ଏ ଗୁଡ଼ିକ ସେଥି ସଙ୍ଗେ ମିଶୁ ନାହିଁ । ଏହି ଛନ୍ଦ ଭେଦ ମୂଳ ପାଠର ପାଦ ଟିପ୍‌ପଣୀରେ ସୂଚିତ ହୋଇଛି । ଏହା ଛଡ଼ା ଏହି ପୋଥିର ଶେଷ ତିନୋଟି ପଦ (୨ୟ ପୋଥି ପଦ ସଂଖ୍ୟା ଅନୁସାରେ ୭୪୮-୭୫୦) ମଧ୍ୟ ୧୪ ଅକ୍ଷର ଅଟେ । ପରିଶିଷ୍ଟରେ ଏହା ଦେଖାଯାଇ ପାରେ ।

ଭାବର ଗାମ୍ଭୀର୍ଯ୍ୟ ରକ୍ଷା କରିବାକୁ ଯାଇ କବି ଛନ୍ଦ ବଦଳାଇ ନ ଥିବେ ବୋଲି ବିଶ୍ୱାସ ।

(ଚ) ଅଲଙ୍କାର

ଶ୍ରୀଚରଣ ସୁଧାନିଧି ଭକ୍ତିପ୍ଲୁତ ହୃଦୟର କାବ୍ୟ । ଏହାର ଅଲଙ୍କାର—ବିଶ୍ୱାନତା ହିଁ ଏହି କାବ୍ୟର ଅଲଙ୍କରଣ । ବହୁତ ଚେଷ୍ଟା କଲେ ଯାଇ ରୂପକ, ଉପମା, ଉତ୍‌ପ୍ରେକ୍ଷା ଛଡ଼ା ଅନ୍ୟ ଅଲଙ୍କାର ଖୋଜି ପାଇବା ସମ୍ଭବ ନୁହେଁ ।

**ରୂପକର** ଅଧିକାଂଶ ଉପମାନ 'ଚରଣ' ପାଇଁ ହିଁ ପ୍ରଯୁଜ୍ୟ । ନିମ୍ନରେ ତାହାର ତାଲିକା ଦିଆ ହେଲା ।

ପାଦ-ପାଦ୍ମ (ପଦ-୨୬, ୩୮, ୩୯, ୪୦, ୫୫, ୧୧୧, ୧୨୩, ୧୩୩, ୧୩୫, ୧୪୭, ୧୫୩, ୧୫୪), ପଦ୍ମ-ଚରଣେ (ପଦ-୩୧, ୧୨୧, ୧୪୯,

୧୫୫, ୧୯୧), ପାଦକମଳ (ପଦ-୩୭), ପଙ୍କଜ-ଲୋଚନ (ପଦ-୧୨୫) ଭବସିନ୍ଧୁ (୧୩୧), ଭବସାଗର (୫୫୦), ସଂସାର ସାଗର (୪୪୮) ନରକ-ପଙ୍କ (୨୩୪), କାମ ସୁରଭି (୨୯୯), କାଳସର୍ପ (୩୦୭), ଲୋଭ-ତରଙ୍ଗ (୩୦୭), ଜଗଜ୍ୟୋତି (୪୪୮), ଜ୍ଞାନସିନ୍ଧୁ (୫୫୮), ମନ-ନପୁଂସ (୫୭୧) ଓ ଗୃଦ୍ଧପଦ୍ମ (୫୮୧)।

ସମ୍ପୂର୍ଣ୍ଣ ପଦରେ ରୂପକର ବ୍ୟବହାର ଗୋଟିଏ ସ୍ଥାନରେ ଦେଖିବାକୁ ମିଳେ—

ମୃତ୍ୟୁ ଦେବତା ସିଂହ ରୂପେ ଧରଇ
ସଂସାର ବନେ ମୃତ୍ୟୁ ଜୀବ ଚରଇ ॥ (ପଦ-୨୨୫)

ଉପମାର ମାତ୍ର ଦୁଇଟି ଉଦାହରଣ ମିଳେ :

୧। "କଉସ୍ତୁଭ ମଣି ଶୋଭିତ ହୃଦୟେ
ଘନ ମେଘେ ଯେହ୍ନେ ଆଦିତ୍ୟ ଉଦୟେ। ୧୨୯।

୨। "କୋଟି ଚନ୍ଦ୍ରସମ ତମ ନିବାରଣ । ୩୦୦।

ଉତ୍ପ୍ରେକ୍ଷା ଅଳଙ୍କାରର ଗୋଟିଏ ଉଦାହରଣ ଦେଖିବାକୁ ମିଳେ :

"କର୍ଣ୍ଣେ ମଣିମୟ ମକର କୁଣ୍ଡଳ
ନିନ୍ଦୁ ଅଛି ଯୋଡ଼ି ଆଦିତ୍ୟ ମଣ୍ଡଳ । ୧୨୫।

ଭାବବିଭୋର, ଭକ୍ତ ହୃଦୟ, ପ୍ରଭୁସେବକ କବିର ଅଳଙ୍କାର— ଚମତ୍କାର ଦେଖାଇବା ପାଇଁ ଇଚ୍ଛା ନାହିଁ, ବେଳ ମଧ୍ୟ କାହିଁ ? ସ୍ୱତଃସ୍ଫୂର୍ତ୍ତି ଭାବରେ ଯାହା ଆସିଗଲା, ତାହାହିଁ ଯଥେଷ୍ଟ ।

## ୪. ଶେଷକଥା

ସମଗ୍ରତଃ ଏହା କୁହାଯାଇ ପାରେ ଯେ ଭାବଭକ୍ତିକୁ ସୁନ୍ଦର ଭାବେ ପ୍ରକାଶ କରିବା ପାଇଁ ଗୋବିନ୍ଦ ଭଞ୍ଜ ଉପଯୁକ୍ତ ଛନ୍ଦ ଚୟନ ଓ

ଅନୁଭୂତି ମାନଙ୍କର ସଂଯୋଜନ କରି ଏହି କାବ୍ୟକୁ ରସସିକ୍ତ କରି ପାରିଛନ୍ତି । ବଳରାମଦାସଙ୍କ ପ୍ରସିଦ୍ଧ କାବ୍ୟ 'ଭାବସମୁଦ୍ର' ପରେ ଏହା ହେଉଛି ଓଡ଼ିଆ ସାହିତ୍ୟର 'ଦ୍ୱିତୀୟ ଭାବକାବ୍ୟ' ।

'ଶ୍ରୀଚରଣ ସୁଧାନିଧି'ର ସମ୍ପାଦନା ପାଇଁ ଭଞ୍ଜ ପ୍ରକାଶନୀ ଟ୍ରଷ୍ଟର ଚେୟାରମ୍ୟାନ କେନ୍ଦୁଝରର ଶ୍ରେଷ୍ଠରାଜ ଶ୍ରୀମାନ୍ ଲକ୍ଷ୍ମୀନାରାୟଣ ଭଞ୍ଜ ଦେବ ପ୍ରେରଣାର ମୂଳଉତ୍ସ ହୋଇଥିବାରୁ ମୁଁ ତାଙ୍କ ପାଖରେ କୃତଜ୍ଞ । ଏହି ମର୍ମରେ ଆନ୍ତରିକ ଭାବେ ମୋତେ ପରାମର୍ଶ ଓ ମାର୍ଗ ଦର୍ଶନ ଦେଇ 'ଶ୍ରୀଚରଣ ସୁଧାନିଧି' ପାଇଁ 'ଅଭିମତ' ଲେଖି ଦେଇ ଥିବାରୁ ମୁଁ ମୋର ଗୁରୁ ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ରିଡ଼ର ଡ଼ଃ କୃଷ୍ଣଚରଣ ସାହୁଙ୍କ ଠାରେ ଋଣୀ । ଅନ୍ୟ ଯେଉଁମାନେ ଏହିକାର୍ଯ୍ୟ ପାଇଁ ମୋତେ ସାହାଯ୍ୟ, ପ୍ରେରଣା ଓ ତଥ୍ୟ ଯୋଗାଇଛନ୍ତି, ଧନ୍ୟବାଦ ମାତ୍ର ଅର୍ପଣ କରି, ସେମାନଙ୍କ ସ୍ନେହ ବନ୍ଧନରୁ ମୁକ୍ତ ହେବାକୁ ମୁଁ ଇଚ୍ଛାକରୁ ନାହିଁ ।

'ଶ୍ରୀଚରଣ ସୁଧାନିଧିର'ର ପାଠକ ମାନଙ୍କୁ ଶ୍ରୀଚରଣରେ ଭକ୍ତି ଦ୍ୱାରା ଅହଙ୍କାର ରୂପୀ ଦୁର୍ଗ-ବନ୍ଧନରୁ ମୁକ୍ତି ମିଳୁ, ଏହାହିଁ ପ୍ରାର୍ଥନା ।

ରଘୁନାଥ ମହାପାତ୍ର

# ଶ୍ରୀ ଚରଣ ସୁଧାନିଧି

ହୃଦେ ଚିନ୍ତ ହରିଚରଣ କମଳ
ସର୍ବ ମଙ୍ଗଳ ସର୍ବ ହୋଏ[1] ସୁଫଳ ।୧।
ଅଭେ[2] ପାଦପଦ୍ମେ[3] ଚିନ୍ତା ଯେ କରନ୍ତି
ବିଘ୍ନଗଣେ[4] ତାଙ୍କୁ ଦେଖିଲେ ଡରନ୍ତି ।୨।
ଅଭେ[5] ପାଦପଦ୍ମ କରିବା ସଦୟେ[6]
ଯାହା ଆଶ୍ରେ[7] କଲେ ହୋଏ[8] ସର୍ବ ଜୟେ[9] ।୩।
ଯେଉଁ ପାଦ ପଦ୍ମେ[10] ତୁଳସୀ ଭୂଷଣ
ଚିନ୍ତା କଲେ ନାଶେ ଅଶେଷ କଷଣ ।୪।
ଯେଉଁ ପାଦ ପଦ୍ମେ[10] କମଳା ବିଳାସେ
ହରଷେ ଧରିଛନ୍ତି କୁଚ କଳସେ ।୫।
ଯେଉଁ ପାଦ ପଦ୍ମେ ଖଟି ଖଗବର[11]
ହରି ବାହନ[12] ରଥଧ୍ୱଜ ଉପର ।୬।

---

୧ ହୃଏ (୧), ହୃଏ ସର୍ବ (୩)
୨ ଅଭୟ (୧), ଅଭୟେ (୨)
୩ ପାଦକୁ ଯେ(୧), ପାଦପଦ୍ମ(୩)
୪ ବିଘ୍ନଗଣ (୧) ବିଘ୍ନଗଣମାନେ (୪) ଦୁଷ୍ଟଗଣ (୩)
୫ ଅଭୟ (୧)
୬ ପାଦକୁ ହୃଦେକର ଲୟ (୧)
୭ ଅଶ୍ରା (୧)
୮ କର (୧)
୯ ଜୟ (୧)
୧୦ ପଦ୍ମ (୧)
୧୧ ଖଗେଶ୍ୱର (୩)
୧୨ ବାହାନ (୨)

ଭୃତ୍ୟ ଭକତି ଯେବେ ବଶ ହୋଇଲେ
ଗରୁଡ଼ଧ୍ୱଜ ନାମ ହରି[୧] ବହିଲେ ।୭।
ଉତ୍ତାନ ପାଦ ବୋଲି ଏକଇ[୨] ରାଜନ
ଧ୍ରୁବ[୩] କୁମର ବୋଲି ତାର[୪] ନନ୍ଦନ ।୮।
ପିତା କୋଳେ ପୁଣ ବସିବାକୁ ଗଲା
ସାବତ ଜନନୀ ବସି ତ[୫] ନ ଦେଲା ।୯।
ଅଭିମାନେ ପାଞ୍ଚ[୬] ବରଷ କୁମର
ମଧୁବନେ ତପ କଲା ମହାଘୋର ।୧୦।
ହରି ଚରଣ ଚିନ୍ତି ଧ୍ରୁବ[୭] କୁମର
ସ୍ଥାନ ପାଇଲା[୮] ସର୍ବ ଦେବ ଉପର ।୧୧।
ହିରଣ୍ୟ[୯] କଶ୍ୟପୁ[୧୦] ଦଇତ[୧୧] ରାଜନ
ପ୍ରହଲାଦ[୧୨] ବୋଲି ତାହାର[୧୩] ନନ୍ଦନ ।୧୨।
ପୁଣ ପ୍ରହଲାଦ ବିଷ୍ଣୁରେ ଭକତି[୧୪]
ଶୁଣି କୋପକଲା ଅସୁର ନୃପତି ।୧୩।
ବିଷ ଜ୍ୱାଳା[୧୫] ଅନଳରେ ସେ ଦହିଲା
ହରି ଚରଣ ଗୁଡ଼ି ବୋଲି ବୋଇଲା ।୧୪।
ସର୍ପେ ଡଂସାଇ[୧୬] ଗଜ ମୁଖେ ମରଇ
ଶମ୍ବରାସୁର[୧୭] ନାଗ ପାଶେ[୧୮] ବନ୍ଧାଇ ।୧୫।
ଶତେ ଯୋଜନ ଜଗତୀରୁ ପକାଇ
କୁଟୀହା କଲା ବିପ୍ରଗଣ ବସାଇ[୧୯] ।୧୬।

---

୧ ହରିନାମ (୫)
୨ ଏକ (୧, ୨)
୩ ଧ୍ରୁବ (୨)
୪ ତାଙ୍କ (୧), ତାହାର (୫)
୫ ବସିଥେ (୧) ବସିଥ (୨)
୬ ପଞ୍ଚ (୧)
୭ ଧ୍ରୁବ (୨)
୮ ପାଇଲେ (୧)
୯ ହିରଣ୍ୟ (୨)
୧୦ କଶିପୁ (୧)
୧୧ ଦୈତ୍ୟ (୩)
୧୨ ପ୍ରହ୍ଲାଦ (୨)
୧୩ ତାହାଙ୍କ (୧)
୧୪ ଭଗତି (୧)
୧୫ କାଳ (୧), ଜ୍ୱଳ (୫)
୧୬ ଦଂଶାଇ (୧)
୧୭ ଶମ୍ବରାସୁର (୫)
୧୮ ପାଶେ (୫, ୨)
୧୯ ଡ଼କାଇ (୧)

ବାନ୍ଧି ପକାଇଲ ସମୋଦ୍ର[୧] ଭିତରେ[୨]
ଗିରିବର ମାନ ପକାଇ[୩] ଉପରେ । ୧୭ ।
ତଥାପି ପ୍ରହ୍ଲାଦ ଚିନ୍ତେ ଚରଣ
ଯେଉଁ ଚରଣ ଭବଭୟ ହରଣ । ୧୮ ।
ଚିନ୍ତ ଚରଣ ଭେଟିଲେ[୪] ପ୍ରହ୍ଲାଦ[୫]
ଦୁଗତି[୬] ମେଣ୍ଟି[୭] ପାଇଲେ[୮] ଇନ୍ଦ୍ରପଦ । ୧୯ ।
ଯେଉଁ ପାଦପଦ୍ମ ଚିନ୍ତିଲେ ଅଦିତି
ଶୂନ୍ୟ ପୁରୁଷଙ୍କୁ ଲଭିଲେ[୯] ସନ୍ତତି । ୨୦ ।
ଯେଉଁ ବାସୁଦେବ[୧୦] ଜଗତେ ପ୍ରକାଶ[୧୧]
ଅଦିତି ଗର୍ଭେ ହୋଇଲ ତାର ବାସ[୧୨] । ୨୧ ।

ଧନ୍ୟ ଅଦିତି ଧନ୍ୟ ତାଙ୍କ ଉଦର
ଗର୍ଭେ ସମ୍ଭୂତ ବାମନ ଅବତାର । ୨୨ ।
ଯେଉଁ ଚରଣେ[୧୩] ବଳି ଶିରେ[୧୪] ମଣ୍ଡିଲେ
ବ୍ରହ୍ମାଣ୍ଡ ଖଣ୍ଡ ଯେଉଁ[୧୫] ପାଦେ[୧୬] ଖଣ୍ଡିଲେ । ୨୩ ।
ବଳି ରାଜା ଯେଉଁଠେ[୧୭] ତପ କଲେ କାହିଁ
ଯେଉଁଠେ[୧୭] ଭାଗ୍ୟବନ୍ତ[୧୮] ଦେଖିଲ ତ ନାହିଁ । ୨୪ ।

ଯୋଗୀବୃନ୍ଦ ବନ୍ଦେ ଯେବଣ ଚରଣ
ବଳି ମଣ୍ଡଳ ଉପରେ ଆଭରଣ । ୨୫ ।
ଯେଉଁ ପାଦପଦ୍ମୁଁ ସ୍ରବୁ ଅଛି[୧୯] ଗଙ୍ଗା
ଦୂରିତ ଅରଣ୍ୟ[୨୦] ଗହନେ[୨୧] ତରଙ୍ଗା । ୨୬ ।

---

୧ ସମୁଦ୍ର (୧)
୨ ମଧ୍ୟରେ (୩)
୩ ବସାଇ (୧, ୨, ୩)
୪ ଭେଟିଲ (୧)
୫ ପ୍ରହ୍ଲାଦ (୨)
୬ ଦୁର୍ଗତି (୧, ୨)
୭ ନାଶି (୧, ୨), କାଟି (୩)
୮ ପାଇଲ (୧)
୯ ଭେଟିଲେ (୩)
୧୦ ପାଦପଦ୍ମ (୫)
୧୧ ନିବାସ (୧)
୧୨ ହୋଇଲେ ଈଶ୍ୱରପ (୧)
ହୋଇଲେ ପୀତବାସ (୩)
୧୩ ଚରଣେ (୧)
୧୪ ଶିର (୧)
୧୫ ଯୁଠେ (୧)
୧୬ ଶିରେ (୨)
୧୭ ଏଠେ (୧)
୧୮ ହତଂଭାଗି (୧, ୨)
୧୯ ଛନ୍ତି (୧)
୨୦ ହରଣେ (୫)
୨୧ ବହନେ (୧)

ଯା'ର ପଦ୍ମ ନାଗି[1] ଧନ୍ୟ ସୁର ନଦୀ
ଶିରେ ଶଙ୍କର ବନ୍ଧିଲେ[2] ବସ୍ତ୍ରୁ ପଦୀ[3] | ୨୭ |
ନାନା ତୀର୍ଥ ଜଳ ଘେନି[4] ବେଦପତି[5]
ଯେଉଁ ଚରଣେ ଅଭିଷେକ[6] କରନ୍ତି | ୨୮ |
ଯେଉଁ ଚରଣ ପ୍ରସାଦେ[7] ସୁରପତି
ତ୍ରିଭୁବନ ଭୋଗ ନିଷ୍ଟିନ୍ତେ କରନ୍ତି | ୨୯ |
ଭଞ୍ଜ ଗୋବିନ୍ଦ[8] କହେ ଶୁଣ[9] ମନାଇ
ଅଭେ ପାଦ ପଦ୍ମେ[10] ସର୍ବ ସୁଖ ପାଇ | ୩୦ |
ରାଜା ଦଶରଥ କଉଶୁଲ୍ୟା[11] ରାଣୀ
ପଦ୍ମ ଚରଣେ ଖଟିଲେ[12] ବେନି ପ୍ରାଣୀ | ୩୧ |
କଲେ ସଦୟେ ହୋଇଲ[13] ପୂର୍ଣ୍ଣ କାମ
ଭ୍ରମ[14] ବ୍ରହ୍ମ ପୁତ୍ର ପାଇଲେ[15] ଶ୍ରୀରାମ | ୩୨ |
ଶୁକ ସନକ ଯେଉଁ ପାଦେ ନମନ୍ତି[16]
ଜନମେ ବନେ ମୁନି[17] ଯାହା ଚିନ୍ତନ୍ତି | ୩୩ |
ସେ ରାମ ରାଜା ଦଶରଥ ନନ୍ଦନ
ଯାର ନାମ[18] ନାଶେ ସଂସାର ବନ୍ଧନ | ୩୪ |
ଭ୍ରତ[19] ଲକ୍ଷ୍ମଣ ସତ୍ରୁଘନ[20] ସହିତେ
ଯେଉଁ ଚରଣେ ସେବନ୍ତି[21] ଅନୁବ୍ରତେ[22] | ୩୫ |

---

୧ ଲାଗି (୧)
୨ ଧଇଲେ (୪)
୩ ବାନ୍ଧି (୪)
୪ ଘେନିଣ (୪)
୫ ସୁରପତି (୪)
୬ ଚରଣ ଅଭିଷେକ (୩, ୪)
ଚରଣେ ନେଇ ଅଭିଷେକ (୨)
୭ ଶେବୀତା (୨)
୮ ଦ୍ୱୋହ୍ମୀ ଗୋବିନ୍ଦ (୧, ୨)
୯ ଶୁଣ କହେ (୧)
୧୦ ଅଭିନ୍ନ ପାଦରେ (୧)
ଅଭିନ୍ନେ ପାଦପଦ୍ମେ (୩, ୪)
୧୧ କଉଶଲ୍ୟା (୧)
୧୨ ଚରଣ ସେବିଲେ (୧)
୧୩ ସଦୟ ଲଭିଲେ (୧)
ସଦୟେ ହୋଇଲେ (୪)
୧୪ ପୂର୍ଣ୍ଣ (୧)
୧୫ ହୋଇଲେ (୧)
୧୬ ସ୍ୱାମେ ରମନ୍ତି (୩)
୧୭ ମୁନି ବ୍ରହ୍ମେ (୧)
ବନେ ଯୋଗି (୨)
୧୮ ନାମେ (୨, ୩)
୧୯ ଭରତ (୧)
୨୦ ଶତ୍ରୁଘ୍ନ (୧)
୨୧ ଖଟନ୍ତି (୧)
୨୨ ଅନୁରତେ (୧) ଏକଚିତ୍ତେ (୩)

ବିଶ୍ବାମିତ୍ର ମୁନି ଚରଣେ[1] ଖଟିଲେ
ଯଜ୍ଞ ସ୍ଥାନେ ଯଜ୍ଞ ପୁରୁଷ ଭେଟିଲେ ।୩୬।

ଯଜ୍ଞ[2] ମୁନିବର କଲେକ ସୁଫଳ
ପ୍ରତ୍ୟକ୍ଷେ ଦେଖି ରାମ ପାଦ କମଳ ।୩୭।

ପାଦ ପଦ୍ମ ଲାଗି[3] ଗଉତମ ନାରୀ
ମହାଘୋର ଶାପୁଂ[4] ତରିଲେ ସୁନ୍ଦରୀ[5] ।୩୮।

ଯେଉଁ ପାଦପଦ୍ମ ଜନେକ[6] ପୂଜିଲେ[7]
ଯେଉଁ ପାଦପଦ୍ମ ଜାନକୀ[8] ଭଜିଲେ[9] ।୩୯।

ଯେଉଁ ପାଦପଦ୍ମ ଦେଖି ପ୍ରଶୁଧର[10]
ଚରଣ ଚିହ୍ନ ହୋଇଲେ ଯୋଗେଶ୍ବର ।୪୦।

ଭକ୍ତି[11] ଗୋବିନ୍ଦ ପାଦ ପଦ୍ମେ ଶରଣ[12]
ଯେଉଁ ଚରଣ ଭବଭୟ ହରଣ ।୪୧।

ଚରଣ ସେବି[13] ହନୁମାନ ପାଇଲେ
ଶୂର[14] ସୁଜ୍ଞାନୀ ଚିରଞ୍ଜୀବୀ[15] ହୋଇଲେ ।୪୨।

ଦୁନ୍ଦୁଭି ଅସ୍ଥି ଉଡ଼େ ଯେଉଁ ଚରଣ
ଯେଉଁ ଚରଣ ସୁଗ୍ରୀବର ଶରଣ[12] ।୪୩।

ବଳବନ୍ତ ବାଳିବଧ ରାମ[16] ବାଣେ
ସୁଗ୍ରୀବ ଅଭିଷେକ ଯେଉଁ[17] ଚରଣେ[18] ।୪୪।

---

୧ ଚରଣ (୫)
୨ ଯଜ୍ଞେ (୫)
୩ ଲଗି (୧)
୪ ଶାପୁଁ (୧) ଶାପୁ (୮)
୫ ସୁନ୍ଦେଶୀ
୬ ଜନକ (୧)
୭ ସେବିଲେ (୧) ଭଜିଲେ (୩)
୮ ଜାନକୀ ପଦ୍ମଚରଣେ (୧)
୯ ସେବିଲେ (୫)
୧୦ ପର୍ଶୁଧର (୧)
୧୧ ଦ୍ରୋହୀ (୧, ୨, ୩)
୧୨ ସରଣ (୫)
୧୩ ସେବା (୧, ୨)
୧୪ ସୁର (୧, ୨)
୧୫ ଚିରଂଜୀବ (୫, ୩)
୧୬ ଯୋଉଁ (୪)
୧୭ ସେ (୩)
୧୮ ଶ୍ରୀ ଚରଣେ (୨)

ସୀତ୍ୟା[୧] ହରଣେ ଖ୍ୱବଣର ଯେ[୨] କଥା
ସୁଗ୍ରୀବ କହିଲେ ସକଳ[୩] ବାରତା[୪] । ୪୫ ।

ଅମଳାନ ବସ୍ତ୍ର ରତ୍ନ ଚୂଡ଼ ଦେଲା
ଦେଖି ରଘୁନାଥ ସାହସ ଛାଡ଼ିଲା । ୪୬ ।
ସଚେତ କଲେ ସେ ସୁମିତ୍ରା[୫] ନନ୍ଦନ
ମୁଖେ ଜଳ ସିଞ୍ଚି କହନ୍ତି ବଚନ[୬] । ୪୭ ।

ସଚେତ କରଣ ଲକ୍ଷଣ[୭] କହଇ
ଏ ଘୋର କଥା କେତେ ମାହ ଅଟଇ । ୪୮ ।

ଲଙ୍କା ଗଡ଼କୁ ଦୂତ ଆମ୍ଭେ ପେଷିବା
ଠାବ କରି ମହୀସୁତ୍ଲୀକ ଲଭିବା[୮] । ୪୯ ।
ଦଶମାଥ ଶିର କାଟିଲା ବଧାତା
ଯେଣୁ ହରିନେଲା ଯନେକ ଦୁହିତା[୯] । ୫୦ ।
ଶୁଣିଣ ଶ୍ରୀରାମ ବସ୍ସନ୍ତେ[୧୦] ହରଷ
ହନୁମନ୍ତ ବୀର ହକାରିଲେ[୧୧] ପାଶ । ୫୧ ।

ଭୋହୋ ହନୁମନ୍ତ ଚଳ ଲଙ୍କ[୧୨] ପୁରୀ
ଠାବ କରି ଆସ ଜନକ କୁମାରୀ । ୫୨ ।
ଆଜ୍ଞା ପ୍ରମାଣେ ହନୁମନ୍ତ ଚଳିଲା[୧୩]
ଶ୍ରୀ[୧୪] ଚରଣ ଧୂଳି ଶିରେ ଲାଗାଇଲା[୧୫] । ୫୩ ।

ଅଜ୍ଞା ଶିରେ ଘେନ ଚଲେ ହନୁମାନ[୧୬]
ଦିନ୍ତ ଛଟେ ଭଗ ପବନ ନନ୍ଦନ । ୫୪ ।

---

୧ ସୀତା (୧, ୨)
୨ ରାବଣସ୍ୱର ଯେ (୪)
୩ କହଇ ସମସ୍ତ (୧, ୨)
୪ ବ୍ୟବସ୍ଥା (୧, ୨, ୩)
୫ ଭରି ସୁଣ ସୁମେଷା (୪)
୬ ବାକ୍ୟନ୍ତ ଫବନ (୧, ୨, ୩)
୭ ଲକ୍ଷ୍ମଣେ (୧, ୨, ୩)
୮ ଖୋଜିବା (୧, ୨, ୩)
୯ ଗେହ୍ନିକଲା ଜନକ ଦୁହିତା (୧, ୨, ୩)
୧୦ ବସ୍ତ୍ରନ୍ତ (୧)
୧୧ ସଙ୍କେଳିକ (୧)
୧୨ ଲଙ୍କା (୧)
୧୩ ଚଳିଗଲା (୪)
୧୪ ଶ୍ରୀରାମ (୪)
୧୫ ଲଟାଇଲା (୪)
୧୬ ପବନର ନାନ (୪)

ରାମ ପାଦପଦ୍ମ ହୃଦରେ ଧଇଲା
ଗୋରୁ ଖୋଜ[1] ଜାଣି ସିନ୍ଧୁ ପାର[2] ହେଲା ।୫୫।
ସିନ୍ଧୁ ପାର ହୋଇ ପବନର ନାନ
ସ୍ମରି ଉପେକ୍ଷିଲା ଶ୍ରୀରାମର ଧନ୍ୟ ।୫୬।
ସୁବଳ ଗିରିରେ ଠାବ କରି ବସି
ସନ୍ଧ୍ୟା କାଳ ଜାଣି ଲଙ୍କା ଗଡ଼େ ପଶି ।୫୭।
ଲଙ୍କା ଗଡ଼େ ହନୁ ଚଳବାର ବେଳେ
ପ୍ରେତ ଅସ୍ଥି ଚୁଣି ଦେଖିଲାକ ଡ଼ୋଳେ ।୫୮।
କାହିଁକ ବାନର ଯାଉ ଅଛୁ ପଶି
ଯମ ପୁରେ ପଠୁ ପ୍ରେତଙ୍କ ସାହାସି ।୫୯।
ପ୍ରେମନ୍ତ ଶୁଣିଣ ହନୁମନ୍ତ ବୀର
ପାଲଟି ଧଇଲା ଅସୁରର ସିର[3] ।୬୦।
ଲଙ୍କା ଦେବତୀ ଯେ ଅଟଇ ଯୁଗତ
ହନୁମନ୍ତକୁ ସେ କହଇ ବାରତ ।୬୧।
ହରି ଆଣି ଅଛୁ ଯନେକର ଝିଅ
ଅଳ୍ପ ଦିନେ ନାଶ ଯିବ ବୀର ପୁଅ ।୬୨।
ତାହା ଶୁଣି ହନୁ ଉଛତ ହୋଇଲା
ହେ ମାତ ଯାଉଛି ବୋଲଣ ବୋଇଲା ।୬୩।
ସମଗ୍ର ମନ୍ଦିର ନଗ୍ରେ[4] ସେ ଖୋଜିଲା[5]
ସୀତ୍ୟାର[6] ସନ୍ଦେଶ କାହିଁ[7] ନ ପାଇଲା ।୬୪।
ମନେ ତାପଭର ହୋଇ ହନୁମାନ
ଚହୁଁ ଉପେଖିଲା[8] ଅସୁର[9] ଭୁବନ ।୬୫।

---

୧ ଗୋଷ୍ପଦ (୪)
୨ ପାର (୧)
୩ ପଦ ୫୬ଠାରୁ ୬୩ ହୁଙ୍କା ପୋଥି (O.L. ୧୦୨) କ୍ରମ (୪)ରେ ହିଁ ଅଛି
୪ ନଗ୍ର (୧)
୫ ଚୋଜଇ (୧)
୬ ସତୀର (୧)
୭ କେଣେହେଁ (୧)
୮ ତେଜିଗଲା (୧)
୯ ସମସ୍ତ (୧)

ଓଟେସକ ବନେ[1] ସୀତ୍ୟାଙ୍କୁ ଠାବ କରି[2]
ଚଉପାଶେ ବେଢ଼ି ଅଛନ୍ତି[3] ଅସୁରୀ । ୬୬ ।
ବସିବାକୁ[4] ଠାବ ନ ପାଇଲା ସନ୍ତୁଁ
ଓସାର[5] ଉପରେ ବସିଲକ ଚନ୍ତୁଁ । ୬୭ ।

ନସାରେ ଗୁପତ ହୋଇଣ ରହିଲା
ରବି ଉଦଏ ବାହାରକୁ ଅଇଲା [6]। ୬୮ ।

ସ୍ନାନକୁ ବଯପେ ଯନେକ କୁମାରୀ
ସଙ୍ଗତେ ଅଛନ୍ତି ସହସ୍ରେ ଅସୁରୀ । ୬୯ ।

ପ୍ରବେଶ ହେଲା ଗଣ୍ଡ୍କା ତୀରେ ପୁଣି
ସିଂସୁପା ବୃକ୍ଷ ମୂଳେ ରାମ ଘରଣୀ । ୭୦ ।

ଏମନ୍ତ ବନେ ଭେଟିଲେ ହନୁମାନ
ବଛମୁଧା ନେଇ ଦେଲେକ ବହନ [6]। ୭୧ ।
ସମ୍ପୂତେ କଲେ ସେ ଜନକ ତନଇ[7]
ବସ୍ରମୁଧା ରଘୁନାଥଙ୍କର ପାଇ । ୭୨ ।
ସୀତ୍ୟା ପଚୁରନ୍ତି[8] କହ[9] ହନୁମାନ
ଭଲେ ଛନ୍ତି ଟିକି ଶ୍ରୀରାମ ଲକ୍ଷ୍ମଣ । ୭୩ ।
ସକଳ[10] ଶୁଣ ହନୁମାନ କହିଲେ
ମାଲ୍ୟବନ୍ତ ଗିରି ଅଛନ୍ତି ବୋଇଲେ । ୭୪ ।
ସୁଗ୍ରୀବ ମଇତ ହୋଇଲେ ଶ୍ରୀରାମ
ବାଳୀ ମାରି ସୁଗ୍ରୀବ କଲେ ରାଜନ । ୭୫ ।
ଚଉଦିଗ ଦୂତ ପେସିଲେଙ୍କ ପ୍ରଭୁ
ସୁଗ୍ରୀବ ଯେ ରାମ ସମର୍ପି ହେ ସବୁ । ୭୬ ।

---

୧ ମଧୁବନେ (୧)
୨ ଠାବ କଲା ସେ ସୁନ୍ଦରୀ (୧)
୩ ସହସ୍ରେ (୧)
୪ ବସିବାରେ (୧)
୫ ଉପର (୧)
୬ ପଦ ୬୮ ଠାରୁ ୭୧ ଯାଏ ପୋଥି (O.L. ୧୦୨) କ୍ରମ (୫) ରେ ନାହିଁ
୭ ତନୟୀ (୧)
୮ ପଚାରନ୍ତି ସୀତା (୧)
୯ ଶୁଣ (୧)
୧୦ ସମସ୍ତ (୫)

ଆଠ ଦିରେ ଆମ୍ଭେ ଅଇଲୁଁ ଦକ୍ଷିଣ
ମାଡ ଦିରେ ଲଙ୍ଘୁ ସମୁଦ୍ର ତୀରେଣ ।୭୭।
ଶ୍ରୀରାମ ଆଜ୍ଞାରେ ସିନ୍ଧୁ ପାରି ହେଲି
ସେ ପାଦ ରେଣୁରେ ତୁମ୍ଭଙ୍କୁ ଭେଟିଲି [୧] ।୭୮।
ଆଜ୍ଞା ହେଉ ମାଏ ଦିଅ ପାଦ ରଜ
କ୍ଷୁଧାରେ ବୁଦ୍ଧି ମୋ ନ ଦିଶଇ[୨] ଆଜ ।୭୯।
ଜନକ କୁମାରୀ ବୋଲନ୍ତି ବଚନ
କଲ୍ୟାଣରେ ବାବୁ ଯାଅ ମଧୁବନ [୧] ।୮୦।
ସବୁ ଦିନ କ୍ଷୁଧା ଦିନକେ ମାରିବୁ
ମୋ ଦୁଃଖ ପ୍ରଭୁ ଛାମୁରେ ଜଣାଇବୁ [୧] ।୮୧।
କହିବୁ ହନୁ ମୋ ପ୍ରାଣ ଈଶ୍ୱରଙ୍କୁ
ମୋର ଆଶା ତେଜି[୩] ଯାନ୍ତୁ ଅଯୋଧ୍ୟାକୁ ।୮୨।
ଶ୍ରୀ ରାମ ଲକ୍ଷ୍ମଣ ଅଯୋଧ୍ୟାକୁ ଯାଇ
ସୁଖେ ପ୍ରଜା ପାଳି ରହନ୍ତୁ ସେ ମହୀ[୪] ।୮୩।
ଦୁଇ ମାସ କଣ୍ଠ କରିଛି ରାବଣ
ଶ୍ରୀ ରାମ ନଇଲେ ତେଜିବ ପରାଣ ।୮୪।
ସୀତ୍ୟା ଠାବ ହନୁ ମେଲାଣି ହୋଇଲା
ମଧୁବନେ ଯାଇ ପ୍ରବେଶ ହୋଇଲା ।୮୫।
ସେହୁ ବନେ ପସି ଫଳ ମୂଳ ଖାଇ
କାହାକୁ ତାହାର ଚତ୍ରେ ଭୟ ନାହିଁ ।୮୬।
ଚୋଟା ରକ୍ଷପାଳେ ଦେଖିଲେକ ପହୁଁ
ସମସ୍ତେ ମିଳି ଗୋଳକଲେ ତହୁଁ ।୮୭।
ହନୁମାନ ଦେଖି ତାହାଙ୍କର ଗୋଳ
ଫଳ ଖାଇ ବୃକ୍ଷ ଭାଙ୍ଗିଲା ସକଳ ।୮୮।

---

୧ ପଦ ୭୫ଠାରୁ ୭୮ ସୁଦ୍ଧା ଓ ୮୦-୮୧ କେବଳ ପୋଥି (CL୧୦୨) କ୍ରମ (୫)ରେ ହିଁ ଅଛି ।
୨ ନ ଦିଶେ ମୋତେ (୧)
୩ ଆଶ ଛାଡ଼ି (୫)
୪ ସୁଖେଣ ପ୍ରଜାପାଳନ କର ମହୀ(୧)

ଅସୁରଙ୍କ ମାରି[1] ହସି ହନୁମାନ
ତୃଣା ଖମ୍ବରେ ବସିଲ ବଦନ ।୮୯।
ନରପତି ଆଗେ ଗୁହାର ଜଣାଇଲା
ବାନରେକ ଆସି ମଧୁବନ ଲଙ୍ଘିଲା ।୯୦।
ଶୁଣି କୋପ କଲା ଅସୁର ନୃପତି
ଅକ୍ଷଏ କୁମାର ପେଷିଲ ଛଡ଼ିତି ।୯୧।
ତାହା ଉତାରେ ଇନ୍ଦ୍ରଜିତ ପେସିଲ
ନାଗପାଶରେ ସେ ହନୁକୁ ବାନ୍ଧିଲ [2]।୯୨।
ଅଢ଼ାଇ ଦିବସ ବନ୍ଧନରେ ପଡ଼ି
ଅନେକ ମାଡ଼ ମାଇଲେ ଦୈତ୍ୟ ବେଢ଼ି ।୯୩।
ସେମନେହେଁ[3] ତାହାର ନୋହିଲାକ ଷୟେ[4]
ଦେଖିଣ[5] ଅସୁରେ ହୁଲେ କଲେ ଭୟେ[6] ।୯୪।
ମାୟା ଉପାୟେ[7] ହନୁମାନ ରଞ୍ଚିଲା[8]
ବସ୍ତ୍ର ତୈଳ ଘୃତ[9] ଅଣାଅ ବୋଇଲା[10] ।୯୫।
ଅଗ୍ନିକୁ ଲଗାଅ ମରିବି ଏକ୍ଷଣି[11]
ଏ ବଚନ ଶୁଣି ଅସୁର ଘଲେଣି[12] ।୯୬।
ବସ୍ତ୍ର ତୈଳ ଘୃତ ସମସ୍ତେ ଅଣାଇ
ହନୁର ଲାଙ୍ଗୁଡ଼େ ଗୁଡ଼ାଇଲେ ନେଇ ।୯୭।
ଅଗ୍ନି ଲଗାବନ୍ତେ ପବନର ନାନ
ଆଖି ମଟକାଇ ହସିଇଲା ଜ୍ଞାନ ।୯୮।
ଆଖି ମିଟିକାଇ ପଡ଼ିଲାକ ପାହୁଁ
ନାଗପାଶ ମାନ ଫେଡ଼ି ଦେଲେ ତହୁଁ [2]।୯୯।

---

୧ ମାରି (୪)
୨ ପଦ ୮୪ ଠାରୁ ୯୨ ଓ ୯୭ରୁ ୯୯ ଘୁଙ୍ଗା ପୋଥି (O.L. ୧୦୨) କ୍ରମ (୪)ରେ ହିଁ ଅଛି ।
୩ ସେମନେକ (୧)
୪ ଷୟ (୧) କ୍ଷଏ (୨)
୫ ଦେଖି (୧)
୬ ଯାଇଲେ ମହାଭୟ (୧)
୭ ଉପାୟ (୧)
୮ ହନୁମନ୍ତ ଚିଠିଲା (୧)
୯ ଘୃତ ତୈଳ (୧)
୧୦ ଲଙ୍ଗେ ଦିଅଇଲା (୧)
୧୧ ଲଗାନ୍ତେ ପବନର ନାନ (୧)
୧୨ ତହୁଁ ସେ ତସ୍ତି ଗୁହିଲା ,ନୟନ,(୧)

ବଶ୍ୱମୂର୍ତ୍ତ ହୋଇ[1] ଉଡ଼ିଲ ଆକାଶେ[2]
ଲାଙ୍ଗୁଳ ବେଢ଼ାନ୍ତେ[3] ଲଙ୍କା ଚଉପାଶେ[4] ।୧୦୦।
ଅଗ୍ନି ଲାଗି ପୁର ଦହନ କରଇ[5]
ରାବଣ କୋପରେ ବସ୍ୟାନର[6] ଗୃହିଁ ।୧୦୧।
ଭସ୍ମେ ବସ୍ୟାନର ନିବଲ୍ଲକ ପହୁଁ
ହନୁ କୋପକଲେ ବସ୍ୟାନରେ ତହୁଁ [7]।୧୦୨।
ବ୍ରହ୍ମ ଅଗ୍ନି କର୍ଣ୍ଣ କପୋଳୁଁ ବାହାର
କ୍ଷଣକେ ଦହିଲ ସକଳ ମନ୍ଦିର[8] ।୧୦୩।
ଲଙ୍କା ପୋଡ଼ି ହନୁ ବେଗେ ଚଳିଗଲା
ଶ୍ରୀରାମ ଛାମୁରେ ସନ୍ଦେଶ କହିଲ [7]।୧୦୪।
ସିରେ କର ଦେଇ ସମସ୍ତ ଜଣାଇ[10]
ଶରଂଜାବୀ ହୁଅ ପବନର ଭାଇ[11] ।୧୦୫।
ତହୁଁ ଚଳିଗଲେ[12] ସଧୀରେ ସଧୀରେ[13]
ସୁଗ୍ରୀବ ସନ୍ୟ ଘେନଲେଇଁ ପଛରେ[14] ।୧୦୬।
ଜଳନଧି ତୀରେ[15] ଶ୍ରୀରାମ ବଜସ୍ପେ
ପଥ ମାଗନ୍ତି ସ୍ୱାମୀ କର[16] ବନୟେ ।୧୦୭।

---

୧ ରୂପ ଧରି (୧)
୨ ଆକାଶ (୧)
୩ ବେଢ଼ାଇଲା (୧)
୪ ପୁର ଦେଶେ (୧)
୫ ଦହିଲ୍କ ପନ୍ଥି (୧)
୬ ବୈଶ୍ୱାନର (୧)
୭ ପଦ ୧୦୨, ୧୦୪ କେବଳ ପୋଥି (O.L.୧୦୨) ନମ (୬)ରେ ଅଛି ।
୮ ନାସା (୧)
୯ ତହୁଁ ସେ ଦହିଲା ଭୁବନ ମଣ୍ଡଳ(୧)
୧୦ ମୁଖେ ଚୁମ୍ବି ଦେଇ ଆଶ୍ୱାସ କରନ୍ତି(୧)
୧୧ ସନ୍ତତ (୧)
୧୨ ଚଳିଲେ (୧)
୧୩ ରାମ ଲକ୍ଷ୍ମଣ ବେନି (୧)
୧୪ ସହିତେ କପିବଳ ଘେନି (୧)
୧୫ କୂଳେ (୧)
୧୬ କରିଣ (୬), ସ୍ୱାମୀ ବନୟେ (୧,୨)

ଶୁଣି ନ ଶୁଣିଲ[1] ଜଳ ଅଧିପତି
କରେ କୋଦଣ୍ଡ ରାମ କାଣ୍ଡ ଘେନନ୍ତି[2] ।୧୦୮।

କୋପେ ରଘୁବୀର[3] ଶର ପ୍ରହାରନ୍ତି[4]
ଜଳ ଶୁଖାଇ ଜଳ ଜନ୍ତୁ ମାରନ୍ତି ।୧୦୯

ଉତ୍ପତ୍ତି ପ୍ରଳୟ କରେ ଯେ ସଂସାର
ରାମ କୋପକୁ କି କ୍ଷମ[5] ରତ୍ନାକର ।୧୧୦।

ନାନା ରତ୍ନମଣି ଘେନିଣ ବରୁଣ
ଅଭେ ପାଦ ପଦ୍ମେ[6] ପଶିଲା ଶରଣ ।୧୧୧।

ସମୁଦ୍ର ବନ୍ଧନ ସ୍ୱରୂପ କହିଲେ
ଦୟାନିଧି ତାଙ୍କ[7] ଅପ୍ରାଧ ସହିଲେ[8] ।୧୧୨।

ଦ୍ରୋହୀ ଗୋବନ୍ଦ ପାଦ ପଦ୍ମେ[9] ଶରଣ
ଯେଉଁ ଚରଣ ଭବଭୟ ହରଣ ।୧୧୩।

ଶାଖା ମୃଗ ଅବା କେତେ ସକ୍ଷ[10] ବଳ
ଚରଣ ଚିନ୍ତି[11] ବାନ୍ଧିଲେ[12] ସିନ୍ଧୁ ଜଳ ।୧୧୪।

ବେଦ[13] ଦାନବେ ଅଗମ୍ୟ ଲଙ୍କ[14] ପୁରୀ
ଚରଣ ବଳେ ଶାଖାମୃଗ[15] ବିହରି ।୧୧୫।

ଚରଣ ସେବି[16] ବାନରେ ବଳବନ୍ତ
ନ ଭଜି ଚରଣେ[17] ଲଙ୍କପତି ହତ ।୧୧୬।

---

୧ ଶୁଣିଲେ (୧)
୨ ବାଣ ଧରନ୍ତି (୧, ୨)
୩ ରଘୁବର (୪) ରଘୁନାଥ (୨)
୪ ପ୍ରହାରନ୍ତେ (୪)
୫ କ୍ଷେମ (୧,୨)
୬ ଅଭୟେ ପାଦରେ (୧, ୨)
୭ ତାର (୨)
୮ ଦହିଲେ (୨) ପୋଛିଲେ (୩)
୯ ବନ୍ଦେ (୪)
୧୦ ଶକ୍ୟ (୧,୨) ସଖା (୪)
୧୧ ସେବି (୧)
୧୨ ତରିଲେ (୧, ୨)
୧୩ ଦେବେ (୧)
୧୪ ଲଙ୍କା (୧)
୧୫ ସଖାମୃଗ (୧)
୧୬ ସେବ (୧)
୧୭ ଚରଣ (୨)

ଶତ୍ରୁ ପଣେ ଯେତେ ରାକ୍ଷସ[1] ନାଶିଲେ
ଚରଣ ଦେଖି ଇନ୍ଦ୍ରଲୋକେ[2] ବସିଲେ । ୧୧୭ ।

ଯେଉଁ ଚରଣ ସେବଣ[3] ବିଭୀଷଣ[4]
ଅମର ହୋଇ ଲଙ୍କ[5] ପୁରେ ରାଜନ । ୧୧୮ ।

ଯେଉଁ ପାଦପଦ୍ମେ ଶାନ୍ତ ମନ୍ଦୋଦରୀ
ମହାସତୀ ହେଲେ ନୋହିଲେ ଦୋଗୃଷୀ । ୧୧୯ ।

ଦଶମାଥ ନାଶି ଦେବ ରାମ ରଘୁ
ସତୀ ସୀତ୍ୟା[6] ଅଗ୍ନି ପରୀକ୍ଷ[7] ସମର୍ପେ[8] । ୧୨୦ ।

ବ୍ରହ୍ମା ରୁଦ୍ର ଇନ୍ଦ୍ର[9] ସର୍ବ ସୁରଗଣ[10]
ଦର୍ଶନ[11] କଲେ ଯେଉଁ ପଦ୍ମ ଚରଣ । ୧୨୧ ।

ଅଗ୍ନି ଦେବତା ଦେହବନ୍ତ ହୋଇଲେ
ସୀତା ନେଇ ପାଦ ପଦ୍ମେ[12] ଯୋଗାଇଲେ । ୧୨୨ ।

ଯେଉଁ ପାଦପଦ୍ମ ଅଭୟ ପଞ୍ଜର
ଭଞ୍ଜ ଗୋବନ୍ଧର[13] ଶପୂନ ମନ୍ଦର[14] । ୧୨୩ ।

ସତୀ ସହିତେ[15] ବିଜେ ନିଜ ଭୁବନ
ଅଯୋଧ୍ୟାବାସୀ ଆନନ୍ଦ ସର୍ବଜନ । ୧୨୪ ।

ଦୂର୍ବାଦଳ[16] ଶ୍ୟାମ ପଙ୍କଜ[17] ଲୋଚନ
କୁଞ୍ଚିତ କେଶ କଟି ପୀତବସନ । ୧୨୫ ।

---

୧ ଅସୁର (୧), ଦାଙ୍ଗସେ (୫)
୨ ବଇକୁଣ୍ଠେ (୧)
୩ ପାପପଦ୍ମେ ଶାନ୍ତ (୧)
୪ ଶ୍ରୀବେସଣ (୫)
୫ ଲଙ୍କା (୧)
୬ ସୀତା·ସତୀ (୧)
୭ ପରୀକ୍ଷା (୧)
୮ ଜଗ୍ରଏ (୧)
୯ ଇନ୍ଦ୍ର ରୁଦ୍ର (୧, ୨)
୧୦ ଦେବଗଣ (୧, ୨)
୧୧ ଦର୍ଶନ (୧, ୨)
୧୨ ପଦ୍ମପାଦେ (୧, ୨)
୧୩ ଗୋବନ୍ଦ (୧)
୧୪ ସପୁନର ଘର (୫)ଶରଣର ଦ୍ୱାର(୩)
୧୫ ସଙ୍ଗତେ (୫)
୧୬ ଦୁର୍ବାଦଳ (୧, ୨)
୧୭ କୃପାଳ (୩)

ଲଲାଟେ ମୁକୁଟ[1] ବିଶେ[2] ଦିବ୍ୟକାନ୍ତି[3]
ଈଷିତ ହାସେ ପ୍ରକାଶେ[4] ଦନ୍ତପନ୍ତି । ୧୨୬ ।
କର୍ଣ୍ଣେ ମଣିମୟ[5] ମକର କୁଣ୍ଡଳ
ନିନ୍ଦୁ ଅଛି ଯୋତି[6] ଆଦିତ୍ୟ[7] ମଣ୍ଡଳ । ୧୨୭ ।
ଦ୍ରୀଘ ବ୍ରତୁଳ[8] ବାହୁ ବେନି ସୁନ୍ଦର
ବିଶାଳ[9] ବକ୍ଷସ୍ଥଳ ନାଭି ଗମ୍ଭୀର[10] । ୧୨୮ ।
କଉସ୍ତୁଭ ମଣି ଶୋଭିତ[11] ହୃଦୟେ
ନୀଳ ମେଘେ ଯେହ୍ନେ ଆଦିତ୍ୟ ଉଦୟେ । ୧୨୯ ।
ପୃଥୁ ନିବଢ଼[12] ଜାନୁ ଜଂଘ ବଳିତ
ମେଘ ଗମ୍ଭୀର ବାଣୀ ଅତି ଲଳିତ[13] । ୧୩୦ ।
ଭବ ସିନ୍ଧୁ ନାବ ବେନି[14] ଶ୍ରୀ ଚରଣ
ସନ୍ଥ ଜନେ ଯହିଁ[15] ପଶନ୍ତି ଶରଣ । ୧୩୧ ।
କରେ କୋଦଣ୍ଡ ବାଣ ତୋଣ[16] ଶୋହଇ
ପୁଷ୍ପକ ରଥ[17] ସର୍ବଜନ ମୋହଇ । ୧୩୨ ।
ସୀତା ସହିତେ ପାଦ ପଦ୍ମେ ଗୃହିଁଲେ[18]
ହୋଇଲେ ସୁଖୀ ସର୍ବ ଦୁଃଖ ଦହିଲେ[19] । ୧୩୩ ।
ଭଜି[20] ଗୋବିନ୍ଦ ପାଦ ପଦ୍ମେ[21] ଆଶ୍ରୟେ
ମହାପ୍ରଭୁ ମୋତେ କରିବା ସଦୟେ[22] । ୧୩୪ ।

---

୧ ତିଳକ (୧, ୨)
୨ ବମେ (୫)
୩ ଦିବ୍ୟଜ୍ୟୋତି (୨)
୪ ବିକାଶେ (୧, ୨)
୫ ମଣିମୟ କର୍ଣ୍ଣେ (୫)
୬ ଜ୍ୟୋତି (୧, ୨)
୭ ଅଦିତି (୫)
୮ ବର୍ତ୍ତୁଳ (୧) ଦ୍ରୀର୍ଘ ବ୍ରୁତୁଳ (୨)
୯ ବିସ୍ତାର (୫, ୨)
୧୦ ଗମ୍ଭୀର (୧, ୨)
୧୧ ଶୋହିତ (୧)
୧୨ ପୃଥୁଳ ତନୁ (୧)
୧୩ ଲଳିତ (୧, ୨)
୧୪ ଯେଉଁ (୧)
୧୫ ତହିଁ (୧)
୧୬ ତୋଣ ବାଣ (୧, ୨)
୧୭ ରଥେ (୧, ୨)
୧୮ ରାମ ପାଦ (୫), ପାଦ ପଦ୍ମ ସେବିଲେ (୧, ୨)
୧୯ ମୋହିଲେ (୩)
୨୦ ଦ୍ରୋହୀ (୧, ୨)
୨୧ ପଦ୍ମ (୧, ୨)
୨୨ ସଦୟ (୧, ୨)

ଯେଉଁ ପାଦପଦ୍ମେ ନମେ ସୁରଗଣ
ସେ ରାମ ନମେ ଆସି[1] ମାତା ଚରଣେ ।୧୩୫।
ଦିବ୍ୟ ଆସନେ ରାମ ସୀତା ବିଜୟେ
ତିନି ଭୁବନେ କରନ୍ତି ଜୟେ ଜୟେ ।୧୩୬।
ଦେବଋଷି ରାଜଋଷି ବ୍ରହ୍ମଋଷି
ଅଭିଷେକ କଲେ ସର୍ବ ମୁନି ଆସି ।୧୩୭।
ନାନା ତୀର୍ଥ ମାନେ[2] ଦେହବନ୍ତ ହୋନ୍ତି
ପୁଣ୍ୟ ଜଳ ନେଇ ଚରଣେ ଢାଳନ୍ତି ।୧୩୮।
ନାଗଲୋକ ନରଲୋକ ଦେବଗଣ
ଅଭିଷେକ ଗୃହ୍ଣି ନମନ୍ତି[3] ଚରଣ ।୧୩୯।
ଯେହୁ ଶୁଣନ୍ତି ଶ୍ରୀରାମ ଅଭିଷେକ[4]
ଲଭନ୍ତି ଲକ୍ଷ୍ମୀ ଜାତ[5] ହୋଏ ବିବେକ ।୧୪୦।
ଲୋପାମୁଦ୍ରା କାନ୍ତ ଚରଣେ[6] ଧ୍ୟାଇଲେ
ତପ ଅନ୍ତେ ରାମ ଚରଣ ପାଇଲେ[7] ।୧୪୧।
ଅଗସ୍ତି ଘୋର ତପ ହୋଏ ସୁଫଳ[8]
ରାମ କଣ୍ଠେ ଲମ୍ବାଇଲେ ବନମାଳ ।୧୪୨।
ବନମାଳ[9] ଯାକୁ ଦେଇ ତ ନ ପାରି
ରାମକଣ୍ଠେ ଲମ୍ବାଇଲେ[10] ତପଶ୍ରୀ ।୧୪୩।
ଅଯୋଧ୍ୟା ନଗରେ ଯେତେ ନର ନାରୀ
ପଶୁ ମୃଗ ଖଗ କୀଟ ଆଦି କରି ।୧୪୪।
ତୃଣ ଲତା ବୃକ୍ଷ ବାନର ସ୍ଥାବର[11]
ଯେତେ ଜନ୍ତୁ ଜାତ ଅଯୋଧ୍ୟା ନଗର[12] ।୧୪୫।

---

୧ ଅସି ନମେ (୧)
୨ ମାନ (୧) ଋଷିମାନେ (୨)
୩ ଲଭନ୍ତି (୫)
୪ ଅଭିସେକ (୫)
୫ ମଠ (୩)
୬ ଚରଣ (୩)
୭ ଗୃହ୍ଣିଲେ (୧, ୨)
୮ ସଫଳ (୧, ୨)
୯ ମନେମାଳା (୧) ବନେମାଳା (୩)
୧୦ ମାଳା ଦେଲେ (୧;୨)
୧୧ ଅଦର (୧) ସ୍ଥାବର ଅଦର (୨)
୧୨ ନବର (୩)

ଚରଣ ଦେଖି ବଇକୁଣ୍ଠେ ନିବାସ
ଯେଉଁ ପୁରେ ସୁଖ ନୁହଇ ବିନାଶ ।୧୪୬।
ଯେଉଁ ପାଦ ପଦ୍ମ ପରମ କାରଣ
କୋଟି ବ୍ରତ[୧] ସମ ଦୁରିତ ହରଣ ।୧୪୭।
ଧନ ବନ୍ଧେବ[୨] ଧନେ ଦୟା କରିବା
ଭଞ୍ଜି[୩] ଗୋବିନ୍ଦର[୪] ଦ୍ରୋହ ନ ଧରିବା[୫] ।୧୪୮।
ବସୁଦେବ ପଦ୍ମ ଚରଣ ଧ୍ୟାଇଲେ[୬]
ଜଗତପତି[୭] ପୁତ୍ର ଭାବେ[୮] ପାଇଲେ ।୧୪୯।
ପୁତ୍ର ଭାବ[୯] ଯାର ହୋଇଲେ ଶ୍ରୀପତି
ଆଉ କାହିଁ ତାର ସଂସାର ବିପତ୍ତି[୧୦] ।୧୫୦।
ଦେବୀ ଦେବକୀ ଆଶ୍ରେ କଲେ[୧୧] ଚରଣ
ଗର୍ଭେ ଧଇଲେ ଅନାଦି ନାରାୟଣ[୧୨] ।୧୫୧।
ସର୍ବ[୧୩] ଜଗତ[୧୪] ଯେହ୍ନୁ[୧୫] ଧରେ ଗର୍ଭରେ[୧୬]
ସେ ହରି ବାସ[୧୭] ଦେବକୀ[୧୮] ଉଦରେ ।୧୫୨।
ଯେଉଁ ପାଦ ପଦ୍ମ[୧୯] ପ୍ରକାଶେ[୨୦] ସଂସାର
ଭାବକୁ ଦେବ ଦେବକୀର କୁମର ।୧୫୩।
ନନ୍ଦ ଯଶୋଦା ଗୋପ ଗୋପୀ ସକଳ
ପାଦପଦ୍ମ ନାଗି[୨୧] ହୋଇଲେ ନିର୍ମଳ ।୧୫୪।

---

୧ ବୃନ୍ଦ (୧) ବନ୍ତ (୩)
୨ ବାନ୍ଧବ (୧, ୨)
୩ ଦ୍ରୋହୀ (୧)
୪ ଗୋବିନ୍ଦାଇ (୫), ଗୋବିନ୍ଦର (୧, ୨)
୫ ଦୁର୍ବୁଦ୍ଧି ହରିବା (୧, ୨)
୬ ଗୃହିଲେ (୨)
୭ ପିତା (୧) ଭଗତେ (୩)
୮ ଭାବ (୫)
୯ ଭାବେ (୧)
୧୦ ଅଛଇ ଦୁର୍ଗତି (୧)
ସଂସାର ବିପତ୍ତି (୫)
୧୧ କରି (୧)
୧୨ ନାରାୟଣ (୨, ୫)
୧୩ ସକଳ (୧)
୧୪ ଯଗତ (୫)
୧୫ ଯେ (୧)
୧୬ ହୃଦରେ (୫) ଉଦରେ (୨, ୩)
୧୭ ଜାତ (୧)
୧୮ ଦେବକୀର (୧)
୧୯ ପଦ୍ମେ (୧) ପଦ୍ମ (୨, ୩)
୨୦ ପ୍ରକାଶ (୫) ପ୍ରବରେ (୨)
୨୧ ଗୃହି (୧)

ଧନ୍ୟ ନନ୍ଦ[୧] ଧନ୍ୟ[୨] ଦେବକୀ ଯଶୋବନ୍ତ
ପଦ୍ମଚରଣ କରେ ଧରି[୩] ଚୁମ୍ବନ୍ତି । ୧୫୫ ।
ଯେଉଁ ପାଦପଦ୍ମ ସକଟ ଭଞ୍ଜନ
ତୃଣା ବକା ଅର୍ଘା ବୃଷଭ ଗଂଜନ[୪] । ୧୫୬ ।
ଗୋପୀ ଗୋପାଳ ଗୋରୁ[୫] ବଛା ସ୍ୱଜନ
ଚରଣ ଚିନ୍ତି ତରିଲେ ବିଷ ଜଳ[୬] । ୧୫୭ ।
ଯେଉଁ ପାଦ ପଦ୍ମେ କାଳୀକ୍ର ଦଳିଲେ
ନାଗ ଦଳ ନାଶି କମଳ ତୋଳିଲେ[୭] । ୧୫୮ ।
ଦାବାନଳ ଅଖଣ୍ଡଳର[୮] ବିବାଦେ
ବ୍ରଜବାସୀ ତରେ ଚରଣ ପ୍ରସାଦେ । ୧୫୯ ।
କେତେ ତପ କଲେ ବରଜ[୯] ଯୁବତୀ
ଚରଣ ଚିନ୍ତି[୧୦] ସୁଖ ଭୋଗ ଭୁଞ୍ଜନ୍ତି[୧୧] । ୧୬୦ ।
ନନ୍ଦଙ୍କୁ ହରିନେଲା ରାଜା ବରୁଣ
ଦେଖିବ ବୋଲି ଯେଉଁ ପଦ୍ମ ଚରଣ । ୧୬୧ ।
ଗୋପେ ଗୋବତ୍ସା[୧୨] ଗୋପସୁତ ହରଣେ
ଭୟେ ବିଧାତା ନମେ ଯେଉଁ ଚରଣେ । ୧୬୨ ।
ଭଞ୍ଜି ଗୋବନ୍ଧ[୧୩] ପାଦପଦ୍ମେ କିଙ୍କର
ଯେଉଁ ପାଦପଦ୍ମେ ପୂଜନ୍ତି ଶଙ୍କର । ୧୬୩ ।
ଯେଉଁ ପାଦପଦ୍ମ ଦ୍ରୁଶନେ[୧୪] ଅନ୍ତର
ଅନେକ ଜନ୍ମର[୧୫] ଦୁଃଖ[୧୬] କଲେ[୧୭] ଦୂର । ୧୬୪ ।

---

୧ ଧନ୍ୟ (୧)
୨ ପୁଣ୍ୟ (୧)
୩ ଧରି କରେ (୧)
୪ ସ୍ୱଗନ (୧) ସଙ୍କଟାନାଶନ (୨)
୫ ଗୋପ (୧)
୬ ବିଷ ଯଳ (୨)
୭ ଅଗ୍ନିକି ଖାଇଲେ (୨)
୮ ଅଖଣ୍ଡଳର
୯ ବ୍ରଜର (୨) ଗୋପର (୩)
୧୦ ସେବି (୧)
୧୧ ହରନ୍ତି (୨, ୩) ସମ୍ପନ୍ତି (୪)
୧୨ ଗୋପ ଗୋବତ୍ସା (୧) ଗୋପେ ଗୋପାଳ (୩)
୧୩ ବ୍ରହ୍ମା ଗୋବନ୍ଦ (୧)
୧୪ ଦର୍ଶନେ (୧) ଦ୍ରସନେ (୨)
୧୫ ଜନ୍ମ (୧)
୧୬ ଦୁରିତ (୧)
୧୭ ହଲ୍ଲ (୧)

ଦେବଙ୍କୁ ଦୁର୍ଲଭ ଚରଣ ଉଦେକ
କୃପାକଲେ ମାନ[୧]ଶିରେ ଅଭିଷେକ ।୧୬୫।
ଯେ ଗି ଧରେ ଯାତ୍ରା[୨] ହୃଦୟ କନ୍ଦର[୩]
ସେ[୪] ପାଦ ଲାଗି[୫] କୁବୁଜାଇ[୬] ସୁନ୍ଦରୀ[୭] ।୧୬୬।
ଯେଉଁ ପାଦପଦ୍ମେ[୮] କେଶୀକି[୯] ବିନାଶି
କୁବଳୟାମାଲ[୧୦] କଂସ[୧୧] ଦର୍ପ ଧ୍ୱଂସି ।୧୬୭।
ମାତା-ପିତା ପଦ୍ମ[୧୨] ଚରଣ ଦ୍ରଶନେ
କଂସ ବନ୍ଧନ ଫିଟେ ହରି ପ୍ରସନ୍ନେ ।୧୬୮।
କଂସ ବନ୍ଧନ କେତେ ମାତ୍ର ଅଟଇ
ଯାର[୧୩] ପ୍ରସାଦେ[୧୪] ଭବ ବନ୍ଧ[୧୫] ଫିଟଇ[୧୬] ।୧୬୯।
ଜଗତ-ଗୁରୁ[୧୭] ଚରଣେ ସେବି ଗୁରୁ
ମୃତ[୧୮] ପୁତ୍ର ଆଣି ଦେଲେ ଯମପୁରୁ ।୧୭୦।
ଯମପୁରୁ ଦେବାରେ[୧୯] କି[୨୦] ଚିତ୍ର କଥ
ଯମର ଯମ, ବିଧାତାର[୨୧] ବିଧାତା ।୧୭୧।
ନାରକାସୁର ପୁରେ ଯୁବା ଯୁବତୀ
ଅଭେ ପାଦପଦ୍ମେ ନିରତେ ଭଜନ୍ତି ।୧୭୨।
ନାରକାସୁରକୁ ରଣେ ନାଶ କରି
ଆଣିଲେ କନ୍ୟା ସୋଳସହସ୍ର କୁମାରୀ ।୧୭୩।

---

୧ ମାଥା (୧) ବଳ (୩)
୨ ଯାତ୍ରା ଧରେ (୪)
୩ କନ୍ଦରେ (୨) କମଳ (୩)
୪ ଯେଉଁ (୧)
୫ ଲଗି (୧)
୬ କୁବ୍ଜୀ (୪)
୭ ନିସ୍ତରେ (୨)
୮ ପାଦପଦ୍ମ (୨)
୯ କଳଙ୍କ (୨)
୧୦ ମଲ୍ଲ (୩) କୁବଳୟା ଅଦ ମାଲ (୨)
୧୧ (୨)ରେ ନାହିଁ
୧୨ ପଦ୍ମ (୧)
୧୩ ଯାହାର (୪) ଯାହା (୨)
୧୪ ପ୍ରସନ୍ନେ (୧) ଶନ୍ତଲେ (୨)
୧୫ ଭୟ (୧)
୧୬ ତୁଟଇ (୧)
୧୭ ଯନ (୨)
୧୮ ମୃତ୍ୟୁ (୨)
୧୯ ଅବା (୧)
୨୦ କେତେ (୧)
୨୧ ଧାତାର ଯେ (୧)

ଭୃଥା ଯାହାର ହୋଇଲେ ଭଗବାନ
ଭାଗ୍ୟବଲେ[1] ଅବା କେ ତାଙ୍କୁ ସମାନ[2] ।୧୭୪।
ନୃଗ ନୃପତି ପାଇ ଅତି ଦୁର୍ଗତି
ହୀନ ଜନ୍ମ[3] ହୋଇ କୂପରେ ପଡ଼ନ୍ତି ।୧୭୫।
ଅନେକ କାଳ[4] ସେ କୂପରେ ରହିଲେ[5]
ବିବିଧ ଦୁଃଖ ରାଶି ରାଜା[6] ସହିଲେ ।୧୭୬।
ଦ୍ୱାରକା ତେଜ[7] ଏକ ଦିନେ ମାଧବ
ଭ୍ରମନ୍ତି ଘେନି ସଙ୍ଗେ ସର୍ବ ଯାଦବ ।୧୭୭।
ବମ୍ବର୍ଦ୍ୱାରେ ବଜେ[9] କଲେ ଗୋସାଇଁ[10]
ନୃଗ ନୃପତି କୁ ତାରିବାର ପାଇଁ ।୧୭୮।
ଶ୍ରୀଭୁଜେ ହରି ଧରି[11] ବଲେ ବାହାର
ଦାନ[12] ଧର୍ମ ତପ[13] ଫଳିଲା[14] ତାହାର ।୧୭୯।
ହୀନ କାୟା ତାର[15] ହୋଇଲା ଅନ୍ତର
ପଦ୍ମ ଚରଣେ ପଡ଼ିଲା[16] ନୃପବର ।୧୮୦।
ଚରଣ ଦେଖି[17] ଦିବ୍ୟ ଦେହ ପାଇଲା[18]
ବିମାନେ ବସି ଗଗନେ ସମ୍ଭାଇଲା[19] ।୧୮୧।
ଭଜ[20] ଗୋବିନ୍ଦ ପାଦପଦ୍ମେ ଶରଣ
ଯେଉଁ ଚରଣ ସର୍ବ ଭୟ[21] ହରଣ ।୧୮୨।

---

୧ ଭୋଗ ଭଦ୍ର (୨)
୨ ସମାନ୍ୟ (୨)
୩ ଜନ (୧)
୪ ଜନ୍ମ (୧)
୫ ପଡ଼ିଲେ (୨)
୬ ରାଜା ରାଣୀ (୫)
୭ ପୁରେ (୨)
୮ ନିର୍ଦ୍ଧାର (୧)
୯ ପ୍ରବେଶ (୧)
୧୦ ହେଲେ ଯାଇ (୩)
୧୧ ଧରି ହରି (୨, ୩)
୧୨ ହୀନ (୧)
୧୩ ଫଳ (୧) ତପ (୨)
୧୪ ଫଳିଲା (୨)
୧୫ ତାହାର (୨)
୧୬ ଛୁଟିଲେ (୩)
୧୭ ତପୋବଳ ଶକ୍ତି (୨)
୧୮ ପାଇଲେ (୩, ୫)
୧୯ ସମ୍ଭାଇଲେ (୩, ୫)
୨୦ ଭଜ (୧) ଦ୍ରୋଷ୍ଟ (୩)
୨୧ ଦୁଃଖ (୩, ୫)

ଭୀଷ୍ମକ ନନ୍ଦନୀ ଅଟନ୍ତି ରୁକ୍ମଣୀ
ନିରନ୍ତର ଚିତ୍ତେ ଚିନ୍ତେ[1] ଚକ୍ରପାଣି ।୧୮୩।
ପୁଣି[2] ରୁକ୍ମଣୀ ଚିନ୍ତେ ପଦ୍ମ ଚରଣ
ଦ୍ୱାରକାକୁ ଦୂତ କଲେ ସେ ବ୍ରାହ୍ମଣ ।୧୮୪।
ସ୍ୱାମୀଙ୍କୁ ବିନୟ ପତ୍ରିକା ଲେଖିଲେ
ଚନ୍ଦନ ପଙ୍କେଣ ମୁଦ ତହିଁ ଦେଲେ ।୧୮୫।
ପତ୍ରିକା ଘେନି ବ୍ରାହ୍ମଣ ଚଳି ଯାଇ
ଦ୍ୱାରକା ଭୁବନେ ପ୍ରବେଶ ହୁଅଇ ।୧୮୬।
ଅନ୍ତର୍ଯ୍ୟାମୀ ନାଥ ସନ୍ଦେଶ ପ ଇଲେ
ପ୍ରସନ୍ନ ହୋଇ ପତ୍ରିକା ପାଠ କଲେ ।୧୮୭।
ନନ୍ଦଘୋଷ ରଥି[3] ସଙ୍ଗତେ ବ୍ରାହ୍ମଣ
ସୈନ୍ୟ ସାଜ ବୋଲି ଦିଅନ୍ତି ଘୋଷଣ ।୧୮୮।
କୁଣ୍ଡି ନଗ୍ରକୁ ପ୍ରଭୁ କଲେ ବିଜୟେ
ଆଜ୍ଞା ଦିଅନ୍ତି ସେ ପ୍ରଭୁ ଦେବରାୟେ ।୧୮୯।
ରୁକ୍ମଣୀକି ତୁମ୍ଭେ କହ ଶୀଘ୍ର ଯାଇ
ବିଜୟ କଲେଣି[4] ପ୍ରଭୁ ସ୍ନେବଗ୍ରାହୀ ।୧୯୦।
ଗ୍ରାମ ଦେବତୀ[5]ଙ୍କ ପୂଜାକୁ ତୁ ଯିବୁ
ସେଠାରେ ଶ୍ରୀ ପଦ୍ମଚରଣ ଦେଖିବୁ ।୧୯୧।
ବିପ୍ର ପ୍ରତିବଶେ ଚିନ୍ତା ଛାଡ଼େ ରୁକ୍ମଣୀ
ବିଗ୍ଧରେ ପୂଜା କରନ୍ତି ଗୋସାମଣୀ ।୧୯୨।
ବେଦୀରେ ବର ବସିଛି ଶିଶୁପାଳ
ରାଜା ସମସ୍ତେ[6] ଅଛନ୍ତି କୋଟି ବଳ ।୧୯୩।
ଅଷ୍ଟରତନେ ଜଡ଼ିତ[7] ଦୋଳାଏ[8]
ସଙ୍ଗେ ଦାସୀଗଣ ପୂଜାକୁ ବିଜୟେ ।୧୯୪।

---

୧ ଚିନ୍ତା କରନ୍ତି (ଅ)
୨ ପୁଣି (ଖ)
୩ ରଥ (ଅ)
୪ କଲେ ଯେ (ଅ)
୫ ଦେବତା (ଅ)
୬ ସମସ୍ତ (୧)
୭ ରଚିତ (ଅ)
୮ ହୋଦୋଳାଏ (୧)

ଗୋସାମଣୀ ଦେଉଳେ ପ୍ରବେଶ ହୋନ୍ତି[୧]
ପୂଜା ସାରି ହୃଦ ବେଦନା ଜଣାନ୍ତି । ୧୯୫ ।
ପ୍ରସନ୍ନ ହୋଇ କହନ୍ତି[୨] ଗୋସାମଣୀ
ପ୍ରତ୍ୟକ୍ଷେ ବର ତୁ ଲଭ ଚମ୍ପାଣି । ୧୯୬ ।
ଦେଉଳୁ ବାହାରି ଦଶଦଗ ଗୃହିଁ .
ଦ୍ରଶନ ଦେଲେ[୩] ସେ ପ୍ରଭୁ ଭବଗ୍ରାହି । ୧୯୭ ।
ଗଜ ବଳ, ଅଶ୍ୱ ବଳ[୪] କୋଟି[୫] ବଳ ଛନ୍ତି
ଝାମ୍ପି କେଶଶ୍ରୀ ଯେସନ ମୃଗୀ ନୟନ୍ତି[୬] । ୧୯୮ ।
ନନ୍ଦଘୋଷ ଚଢ଼ି ରୁକ୍ମିଣୀକି ଘେନି
ଗୋଳ ଧନ୍ଦୋଳ ବାଜେ ବେନ ସଇନ । ୧୯୯ ।
ଲକ୍ଷେ ରାଜା ଜିଣି[୭] ଦ୍ୱାରକା ପ୍ରବେଶ
ହୋଣି ଗୋବିନ୍ଦ ସେ ଚରଣଙ୍କୁ ଆଶ । ୨୦୦ ।
ସୁଦାମା ମିତ୍ର ଭାବେ[୮] ଭଜେ[୯] ଚରଣ[୧୦]
ସବ ସମ୍ପତ୍ତି[୧୧-୧୫] ଦେଲେ[୧] ସତ୍ୟ[୧୭] ପୁରେଣ[୧୮-୨୦]
ମଧୁରିପୁ ମିତ୍ର ହୋଇଲେ ଯାହାର
କେଉଁ ଲଭ ଅବା ନୋହିଲା[୨୧] ତାହାର । ୨୦୨ ।
ଅନ୍ଦର ପୁରେ[୨୨] ବନ୍ଦେ ପଦ ଚରଣ
ଚକ୍ଷୁ ପାଇଲା ଗଲା ତାର[୨୩] କଷଣ । ୨୦୩ ।
ବଡ଼ ନୋହେ ତାକୁ ଚର୍ମ ଚକ୍ଷୁ[୨୪] ଦାନ
ଯାହା ଚିନ୍ତିଲେ ପାଇବ ଦିବ୍ୟ ଜ୍ଞାନ[୨୫] । ୨୦୪ ।

---

୧ ହୁଅନ୍ତି (୪)
୨ ହୋଇ କହନ୍ତି (୪)
୩ ପ୍ରସନ୍ନ ହେଲେ (୧)
୪ କୋଟି (୧)
୫ ରଥ (୧)
୬ ମୃଗ ନୟନ୍ତି (୧)
୭ ଘେନି (୪)
୮-୧୦ ଯେଉଁ ଭାବେ ଧ୍ୟାଇଲେ (୨)
୧୧-୧୮ ସୁଖ ହର ମଞ୍ଜୁପୁରେ ଦେଲେ (୨)
୧୯ ସମ୍ପଦ (୩, ୫)
୨୦ ସତ୍ୟ ପୁରେଣ (୩)
୨୧ ନୋହିବ (୫)
୨୨ ପୁରେଶ (୫)
୨୩ ଗରୁ (୧)
୨୪ ଚକ୍ଷୁ ଚର୍ମ (୩)
୨୫ ଜ୍ଞାନ ଲୋଚନ

ଜରାସନ୍ଧ ଘରେ[୧] ସକଳ[୨] ନୃପତି
ଚରଣ ଚିନ୍ତି ନାଶ[୩] କଲେ ବିପତ୍ତି ।୨୦୫।

ଯଜ୍ଞ[୪] ଘର[୫] ବିଷ ଲଡ଼ୁ[୬] ଆଦି କରି
ସର୍ବ ଦୁଃଖ ଗଲା[୭] ଚରଣ ସୁମରି ।୨୦୬।

ଯେଉଁ ପାଦ ପଦ୍ମ ଜଗତ ବନ୍ଦନ[୮]
ଯାଙ୍କେ ଅର୍ଘ୍ୟ ଦେଲେ ଧର୍ମର ନନ୍ଦନ ।୨୦୭।

ଧର୍ମ ନନ୍ଦନଙ୍କ[୯] ଧନ୍ୟ[୧୦] ବେନ କର
ଯୋଗିଙ୍କି ଅଗମ୍ୟ[୧୧] ପୂଜଲେ ପପୂର ।୨୦୮।

ଯେଉଁ ପାଦପଦ୍ମ ଚିନ୍ତିଲେ[୧୨] ଦ୍ରୁପତି
କୁରୁସଭା ମଧ୍ୟେ[୧୩] ନାଶିଲେ ବିପତ୍ତି ।୨୦୯।

ସ୍ଥିର[୧୪] ବିପତ୍ତି ଆଶ୍ରେ କଲେ[୧୫] ଚରଣ
ପ୍ରଳୟ ଅଗ୍ନିକ କଅବା ତିରଣ ।୨୧୦।

ଯେଉଁ ଚରଣ ବିଦୁର·ପୂଜା[୧୬] କରି
ଦୁର୍ଲଭ କୃପା ବିଦୁରେ କଲେ ହରି ।୨୧୧।

ଅଭାବେ ଯାଙ୍କେ ଭୋଗେ ନୁହେ ନିବୃତ୍ତି[୧୭]
ଭାବେ ବିଦୁର ଘରେ ଭୁଞ୍ଜେ ଶ୍ରୀପତି ।୨୧୨।

---

୧ ପୁରେ (୧)
୨ ଯେତେକ (୨)
୩ ହତ (୧) ହୁତ (୪)
୪ ଜଡ଼ୁ (୧)
୫ ଘରେ (୧)
୬ ନଡ଼ୁ (୨)
୭ କଲେ ଭସ୍ମ (୧) କଷ୍ଟ ଭୁଞ୍ଜି (୩,୪)
୮ ବନ୍ଦନ (୧)
୯ ନନ୍ଦନର (୩)
୧୦ ଧନ୍ୟ ତା (୪)
୧୧ ଦୁର୍ଲଭ (୧)
୧୨ ଭଜିଲେ (୩)
୧୩ ... ଲେ (୨)
୧୪ ସ୍ଥାପ (୧)
୧୫ କଲ୍ପରେ (୧)
୧୬ ଅଶ୍ରେ (୧)
୧୭ ସୁଭୋଗ୍ୟ ଶ୍ରୀହରି ହୋଇଲେ ନିବୃତ୍ତ (୧) ଅଭାବେ ନଯୋଗ୍ୟ ହୋଇଣ ଅପ୍ରୀତ (୨) ଅଭାବେ ଯଯୋଗ୍ୟ ଭୋଗେ ନୋହେ ନିବୃତ୍ତି (୪)

ଅଭେ ପାଦପଦ୍ମେ ଭକ୍ତ ଧନଞ୍ଜୟ
ନାହିଁ ନୋହିବ ହରି[୧] କଲେ[୨] ସଦୟ[୩] । ୨୧୩ ।

ରଥେ ସାରଥୀ ହୋଇ[୪] ଦେବ ଆପଣ
ଶ୍ରୀ ଭୁଜେ ଧରି ହୟ ବାଗ[୫] ପାଞ୍ଚଣ । ୨୧୪ ।

ଭୀଷ୍ମଦେବ ପାଦପଦ୍ମେ ମନାଇଲେ[୬]
ଭୃତ୍ୟ ପ୍ରତିଜ୍ଞା[୭] ରଖି ଚକ୍ର ଧଇଲେ । ୨୧୫ ।

ଭୀଷ୍ମଦେବ ଭାଗ୍ୟ କେହି ନ ପାଇଲେ
ପ୍ରତ୍ୟକ୍ଷେ ଚକ୍ରଧର[୮] ରୂପ[୯] ଚାହିଁଲେ । ୨୧୬ ।

ରଣେ[୧୦] ଚରଣ ଧରି ସର୍ବ[୧୧] ଭେଟିଲେ[୧୨]
ବୈକୁଣ୍ଠ ଗଲେ[୧୩] ସର୍ବ ସୁଖ ଲଭିଲେ[୧୪] । ୨୧୭ ।

ଅଶ୍ୱତ୍ଥାମା ବାଣେ ପରୀକ୍ଷ ନାଶିଲା
ଚରଣ ଶରଣ ଗଲା[୧୫] ପ୍ରାଣ ବଞ୍ଚିଲା । ୨୧୮ ।

ଜୀବଦାନେ[୧୬] ଚକ୍ର ନୋହେ ଚକ୍ରପାଣି
ସର୍ବ[୧୭] ସ୍ୱରୂପ ଗଢ଼ିବାର[୧୮] ଭଙ୍ଗାଣି । ୨୧୯ ।

ଯେଉଁ ପାଦ ପଦ୍ମ ଚିନ୍ତିଲେ ଉଦ୍ଧବ
ପରମ ଗତି ତାଙ୍କୁ ଦେଲେ[୧୯] ମାଧବ । ୨୨୦ ।

---

୧ ଯେଉଁ (୧) ହରି (୩) କଲେ (୪, ୬)
୨ ଯେଉଁ (୪) ତାଙ୍କୁ (୨)
୩ ସ୍ୱଦଏ (୨) ସଦୟେ (୩, ୪)
୪ ହୋଏ (୪)
୫ ବାଗଡ଼ୋର ଧରି (୧) ଧରି ହରିବାଗ (୪)
୬ ମଣ୍ଡାଇଲେ (୧)
୭ ଭୃତ ପ୍ରତିଜ୍ଞା (୨)
୮ ଧରି (୩)
୯ ସ୍ୱର୍ଗେ (୩)
୧୦ ପଦ୍ମ (୧)
୧୧ ଭୂରିଶ୍ରବା (୧)
୧୨ ଭେଟିଲ (୧)
୧୩ ଦେଗଲ (୧) ବସି (୪)
୧୪ ଦୁଃଖ ଛୁଟିଲା (୧)
୧୫ ଦେଖି ଗତ (୧) ଗଲା (୩) ଦେଖିଲା (୪)
୧୬ ଦାନ (୧)
୧୭ ଜର୍ବ (୧)
୧୮ ଗଢ଼ିଲାର (୧)
୧୯ ଦେଲେକ (୩)

ଯେଉଁ ପାଦପଦ୍ମ ଦର୍ଶନେ[୧] ଶବର
ଅପ୍ରାଧ ମେଣ୍ଟି ପାଏ ପୁର[୨] ଅମର[୩] ।୨୨୧।
ଯେଉଁ ଚରଣ ଚିହ୍ନଣ[୪] ଧର୍ମବଶେ
ମନୁଷ୍ୟ[୫] ଦେହ ଘେନ[୬] ସ୍ୱର୍ଗ ବଜଏ[୭] ।୨୨୨।
ଚରଣ ଚିହ୍ନି ସ୍ୱର୍ଗ ନୁହେଁ ଦୁର୍ଲଭ
ଯେଉଁ ଚରଣ[୮] ମୋକ୍ଷ ଗତି ସୁଲଭ[୯] ।୨୨୩।
ସେ ପାଦପଦ୍ମକୁ[୧୦] ସକଳ ଭରସା
ଭଞ୍ଜ[୧୧] ଗୋବଦ୍ଧର ନିରନ୍ତରେ[୧୨] ଆଶା ।୨୨୪।
ମୃତ୍ୟୁ ଦେବତା ସିଂଘ[୧୩] ରୂପ ଧରଇ
ସଂସାର ବନେ[୧୪] ମୃତ୍ୟୁ ଜୀବ[୧୫] ଚରଇ ।୨୨୫।
ଅଭେ[୧୬] ପାଦ ପଦ୍ମ ଚିହ୍ନିଲେ ଭୂଷଣ୍ଡି
କୋଟି ଯୁଗ ଚଳି[୧୭] ରହିଅଛି ପିଣ୍ଡି ।୨୨୬।
ଯେଉଁ ଚରଣ ମାର୍କଣ୍ଡ ମନାଇଲେ[୧୮]
ପ୍ରଳୟ କାଳେ ଉଦରେ ସମ୍ଭାଇଲେ ।୨୨୭।
ସକଳ ସମ୍ପତ୍ତି ସଫଳ ଆକୃତି
ହରି ଚରଣେ ବଳାଇବ[୧୯] ସୁମତି ।୨୨୮।
ତିଳ କୁସୁମ[୨୦] ପ୍ରାଏ ଯୁବା[୨୧] ସମଏ
ଅଭିଳାଷି[୨୨] ସୁଖ ଭୁଞ୍ଜି[୨୩] ହରି ପାଏ ।୨୨୯।

---

୧ ଚିହ୍ନିଲେ (୨) ଚିହ୍ନଣି (୪)
୨ ସୁର ପ୍ରାଏ (୧) ପାଏସୁର (୩,୪)
୩ ଯାଏ ଅମର ପୁର (୨)
୪ ଚିହ୍ନିଲେ (୨)
୫ ମନୁଷ (୨)
୬ ଧରି (୧) ଘେନଣ (୩, ୪)
୭ ଯାଏ (୩, ୪)
୮ ଚରଣରେ (୧)
୯ ଲଭ (୧)
୧୦ ପଦ୍ମେଟି (୧)
୧୧ ଦ୍ରୋହ୍ମି (୧)
୧୨ ନିରନ୍ତର (୧)
୧୩ ସିଂହ (୧)
୧୪ ବନେ (୧)
୧୫ ମତ୍ତ ସିଂହେ (୧) ମୃତ୍ୟୁ ସିଂଘ (୩)
ମୃତ୍ୟୁ ମିଢ (୪)
୧୬ ଯେଉଁ (୩, ୪)
୧୭ ପ୍ରାୟୁ (୧)
୧୮ ମନେଇଲେ (୧)
୧୯ ବଳାଇବା (୧)
୨୦ ପୁଷ୍ପ (ପୁସ୍ୟ) (୨)
୨୧ ହୋଇବା (୨)
୨୨ ଅଭିଳାଷୀ (୩)
୨୩ ଭୁଞ୍ଜି (୧) ଭଜ (୩)

ବଦ୍ଧ୍ୟଲ୍ଲତା[୧] ପ୍ରାପ୍ତେ ଏ ଦେହ ରଚ୍ଚନା[୨]
ଅଭୟ ପାଦପଦ୍ମେ କରବା ଶୋଚନା । ୨୩୦ ।
ମଧୁପ୍ରାଏ[୩] ମଣି ବିଷ ନ ଭକ୍ଷିବା[୪]
ଚରଣ ପଦ୍ମ[୫] ମକରନ୍ଦ ଇଚ୍ଛିବା[୬] । ୨୩୧ ।
ଅଭେ ପାଦପଦ୍ମେ ମନ ବନ୍ଦୀ[୭] ଥାଉ
ମିଛ ମାୟା ମୋହେ ମନ ମୋ ନ[୮] ଯାଉ[୯] । ୨୩୨ ।
ଅଭେ ପାଦ ପଦ୍ମେ ମନେକର ଚିନ୍ତା[୧୦]
ସମ୍ପଦ ଧନେ ନ କର ପ୍ରତ୍ତିଆଶା[୧୧] । ୨୩୩ ।
ଅଭେ ପାଦପଦ୍ମେ ମନେ କର[୧୨] ଚିନ୍ତା
ନରକ ପଙ୍କୁ[୧୩] ସେ ହରି[୧୪] ଉଦ୍ଧାରନ୍ତା[୧୫] । ୨୩୪ ।
ପୂର୍ବେ ନାରଦ ଦାସୀ ପୁତ୍ର ଅଟନ୍ତି
ଅଭେ ପାଦପଦ୍ମେ[୧୬] ନିରତେ ଭଜନ୍ତି[୧୭] । ୨୩୫ ।
ସେବେ ମନାଇଲେ ଶ୍ରିୟା ଦେବୀକାନ୍ତ
ବ୍ରହ୍ମାର ପୁତ୍ର ହୋଇଲେ ଭାଗ୍ୟବନ୍ତ[୧୮] । ୨୩୬ ।
ପାଦ ପଦ୍ମ ମଧୁ କରନ୍ତି ଆହାର
ଦାସୀ ପୁତ୍ର[୧୯] କଲେ ବ୍ରହ୍ମାଙ୍କ କୁମର । ୨୩୭ ।
କାହିଁ ଦାସୀ କାହିଁ ବ୍ରହ୍ମାର ତନୟ
କାହା[୨୦] ନ କରେ ହରି[୨୧] କଲେ ସଦୟ । ୨୩୮ ।

---

୧ ବଦ୍ଧୁଲତା (୨, ୫)
୨ ରଚନା (୧)
୩ ପ୍ରାୟ (୧)
୪ ଭୁଞ୍ଜିବା (୧)
୫ ପଙ୍କ (୨)
୬ ଭପିବା (୧)
୭ ବୁଡ଼ି (୧) ବୁଧି (୫)
୮ ମିଥ୍ୟା ମୋହ ମାୟା ମନଯା ନ (୧)
୯ ଥାଉ (୧) ରହୁ (୫)
୧୦ କରିବା ଭରସା (୧)
୧୧ ସ୍ୱପନ ଧନ କି ଅଉ ସବ ଅଣା (୧)
୧୨ ମନେକର (୧)
୧୩ ମଥିଙ୍କୁ (୧)
୧୪ ଦଙ୍କେ ହରି ସେ (୩, ୫)
୧୫ ଉଧାରନ୍ତା (୩)
୧୬ ପଦ୍ମେଣ (୫)
୧୭ ପଦ୍ ଚରଣେ ଅନୁବରତ ଯାଚନ୍ତି (୧)
୧୮ ତପୋବନ୍ତ (୧)
୧୯ ପୁତ୍ରେ (୨)
୨୦ କାହିଁ (୩)
୨୧ କୃପା (୨)

ଏଡ଼େ ସାନଙ୍କି ଏଡ଼େ ବଡ଼ କରଇ[1]
ପ୍ରସନ୍ନେ ହରି ସର୍ବ ଦୁଃଖ ହରଇ[2] । ୨୩୯ ।

ଅଭେ[3] ପାଦ ପଦ୍ମ ମସ୍ତକେ[4] ନଗାଅ[5]
ମହାଘୋର ନରକେ କଷ୍ଟ[6] ନ ପାଅ । ୨୪୦ ।

ଅଭେ ପାଦପଦ୍ମ ଲୋଚନେ[7] ଦେଖିବା
ଯମ କାଳ ଦଣ୍ଡ ଭୟୁ ଉପେକ୍ଷିବା [8]। ୨୪୧ ।

ପାଦପଦ୍ମ ନାଗି[9] ଶିରେ ଦେବ[10] କର
ଅଶେଷ ଜନ୍ମର ସର୍ବ ପାପହର । ୨୪୨ ।

ପାଦପଦ୍ମ ମାର ଗର୍ଭରେ ଭକ୍ଷିବା
ଚତୁର୍ବର୍ଗ ଫଳ ହସ୍ତରେ ଧରିବା[11] । ୨୪୩ ।

ପାଦପଦ୍ମ ମାର ମସ୍ତକେ କରିବା
ମହାଘୋର ମହାବନ୍ଧରୁ ତରିବା[11] । ୨୪୪ ।

ଗଜଇନ୍ଦ୍ର[12] ଯହୁଁ ଜଳରେ ପସିଲା
ମହାକୁମ୍ଭୀର ଚରଣରେ ଗ୍ରାସିଲା । ୨୪୫ ।

ଅଭେ ପାଦପଦ୍ମେ ସୁମରଇ ଗଜ
କରତୋଳି[13] ଡାକେ ସ୍ୱାମି ଦେବରାଜ । ୨୪୬ ।

ଗଜଇନ୍ଦ୍ର ପଦ୍ମ ଚରଣେ ସୁମରି
ରକ୍ଷା କଲେ ଚକ୍ରେ କୁମ୍ଭୀର ପ୍ରହାରି[14] [8]। ୨୪୭ ।

---

୧ କରନ୍ତି (୧)
୨ ହରନ୍ତି (୧)
୩ ଅଭୟ (୧)
୪ ଶିର (୧)
୫ ଲଗାଅ (୧)
୬ କଷ୍ଟ ନରକ (୧)
୭ ନୋଚନେ (୫)
୮ ପଦ ୨୪୧ଠାରୁ ୨୪୭ (୧)ରେ ନାହିଁ
(୨, ୩, ୫)ରେ ଅଛି ।
୯ ଗୃହି (୫)
୧୦ ଦାଅ (୫)
୧୧ ଧାଡ଼ି କ୍ରମ ୨୪୩ ଓ ୨୪୪ରେ
ଅଲଟ ପାଲଟ ଅଛି ।
୧୨ ଗଜରାଜ (୩)
୧୩ ଯୋଡ଼ି (୨)
୧୪ କବାଳ (୨)

ଅମ୍ବରୀଷ[1] ବୋଲି ଏକ ଭକ୍ତ[2] ରାଜ୍ୟେ
ନିରତେ ଚିତ୍ତ[3] ଅଚ୍ୟୁତ[4] ପାଦେ ଲଗ୍ନେ[5] ।୨୪୮।
ଦୁର୍ବାସା ଋଷି ଯେ[6] କଲେ ମହାରୋଷ
ଶାପ ଦେଲେ ମୁନି ନ ବିଚାରି ଦୋଷ ।୨୪୯।
ଯେଉଁ ଦୁର୍ବାସା ଶ୍ୟାପରେ ଶଚୀପତି[7]
ହତ ଲକ୍ଷ୍ମୀ ହୋଇ ଲଭିଲେ[8] ଦୁର୍ଗତି ।୨୫୦।
ମହାରାଜାଙ୍କୁ ତହିଁ[9] ସାହା[9] ହୋଇଲା
ଦୁଷ୍ଟ[10] ରୁଦ୍ର ଶାପ କିଛି ହିଁ ନୋହିଲା[11] ।୨୫୧।
ମୁନି ଶାପ କିସ କରିବ ତାହାକୁ
ହରି ଚକ୍ର ରକ୍ଷା କରନ୍ତେ ଯାହାକୁ ।୨୫୨।
ସମସ୍ତ ଭୟ[12] ହରେ ହରି ଚରଣ
ଭଞ୍ଜ[13] ଗୋବିନ୍ଦ ବେଗେ ପଶେ[14] ଶରଣ ।୨୫୩।
ନ ଭଜଇ ଯହିଁ[15] ହରି[16] ଶ୍ରୀ ଚରଣ
ପୀଡ଼େ[17] ବନ୍ଧୁ ବ୍ୟାଧି ଗ୍ରହ ଶତ୍ରୁ ପଣ[18] ।୨୫୪।
ନିରତେ ଭଜୁଥିବ ହରି ଚରଣ
ନ ପୀଡ଼ିବ ବ୍ୟାଧି ଗ୍ରହ ଶତ୍ରୁ ଗଣ[19] ।୨୫୫।
ପାଦ ପଦ୍ମ ଭଜି[20] ଦିନ ଯେ ହରନ୍ତି
ସମସ୍ତ ଶୁଭ ତାଙ୍କୁ ଆଶ୍ରୟେ[21] କରନ୍ତି ।୨୫୬।

---

୧ ଅମ୍ବରୀଷ (୧, ୫)
୨ ନୃପ (୫)
୩ ନିରନ୍ତର ଚିନ୍ତ (୧) ଚିନ୍ତା (୨)
୪ ଅମୃତ (୨)
୫ ର ପାଶ୍ୱେ (୧)
୬ ତାହାଙ୍କୁ (୧) ରାଜାଙ୍କୁ (୩, ୫)
୭ ସୁର ପତି (୩, ୫)
୮ ବଞ୍ଚିଲେ (୧)
୯ ଚଉବାହା (୨)
୧୦ ଦ୍ୱିତୀ (୧)
୧୧ ନୋହିଲେ (୧)
୧୨ ତାଙ୍କ (୧)
୧୩ ଦ୍ରୋହୀ (୧)
୧୪ ଯେ ପଶିଲା (୧)
୧୫ ନ ଭଜିଥିବା ପାଏ (୧)
୧୬ ପଦ୍ମ (୧) ହରି ଶ୍ରୀ (୫)
୧୭ ଚିନ୍ତେ (୨) ଚିତ୍ତେ (୧)
୧୮ ଗଣ (୧)
୧୯ ପଦ ୨୫୫ଟି କେବଳ ପଞ୍ଚମ ପୋଥିରେ ଅଛି ।
୨୦ ହରି (୧) ଗୃହି (୫)
୨୧ ଅଶ୍ରେ (୧)

ହରି ଚରଣ ଯାର ଚିତ୍ତେ ପ୍ରକାଶି
କଳଙ୍କ ନାଶଇ[୧] ଯେସନ୍ତେ ପୂର୍ଣ୍ଣ ଶଶୀ । ୨୫୭ ।
ତରୁ[୨] ଗିରିବର[୩] ଲତା ବଲ୍ଲି ମାଳ[୪]
ତେତିଶ କୋଟି ଦେବତା ଦିଗପାଳ । ୨୫୮ ।
ସୁର ସୁନ୍ଦରୀ କିନ୍ନରୀ ନାଗ ବାଳୀ
ଗନ୍ଧର୍ବ ଯେମନ ନନ୍ଦନ ବନେ କେଳି । ୨୫୯ ।
ଅଧ ଊର୍ଦ୍ଧ୍ୱ ସିଦ୍ଧି ସାଧକ ସକଳ
ସପ୍ତ ପ୍ରଜାପତି ନକ୍ଷତ୍ର-ମଣ୍ଡଳ । ୨୬୦ ।
ସୁର ଅସୁର ନାଗ ଯକ୍ଷ କିନ୍ନର[୫]
ଗ୍ରହ ଗଣ ଆଦି ଇନ୍ଦୁ ପ୍ରଭାକର[୬] । ୨୬୧ ।
ଯେସନ୍ତ ଯାହା[୭] ଭୋଗ କରନ୍ତି ବିପୁଳ
ଅଭେ ପାଦ ପଦ୍ମେ ସେବିବାର[୮] ଫଳ । ୨୬୨ ।
ଅଭେ ପାଦ ପଦ୍ମେ ନମେ[୯] ଯାର ମଥା
ଭୋଗ୍ୟ ଥାନ ତାର[୧୦] କେତେ[୧୧] ଚିତ୍ର କଥା । ୨୬୩ ।
ଯେଉଁ ପାଦ ପଦ୍ମ ନିର୍ବାଣ କାରଣ
ନାହିଁ ସଂସାର[୧୨] ନାହିଁ ଜନ୍ମ[୧୩] ମରଣ । ୨୬୪ ।
ଯେଉଁ ପାଦ ପଦ୍ମ କଳ୍ପ[୧୪] ତରୁ ମୂଳ
ଧର୍ମ ଅର୍ଥ କାମ ମୋକ୍ଷ ଚାରି ଫଳ[୧୫] । ୨୬୫ ।
ସେ ପାଦ ପଦ୍ମେ ଯେ ହୋଇବ[୧୬] ବିମୁଖ
କେସନ୍ତ ବିଶେଷି କହିବ[୧୭] ତାର ଦୁଃଖ[୧୮] । ୨୬୭ ।

---

୧ ନାଶେ (୨) ନାଶି (୩)
୨ ତରୁବର (୧)
୩ ଗିରିବର ଅଦ୍ରି (୩)
୪ ମେଘମାଳ (୧, ୨)
୫ ନାଗ ଯକ୍ଷ କିନ୍ନର (୧)
୬ ଇନ୍ଦ୍ର ଦିବାକର (୧)
ନକ୍ଷତ୍ର ସକଳ (୨)
୭ ଯେସନ୍ତ (୫)
୮ ସେବାର (୧)
୯ ସେବେ (୧)
୧୦ ତାକୁ (୧)
୧୧ କେତେ (୧)
୧୨ ସଂସାରେ (୧)
୧୩ ଜନ୍ମ, ଭୟ (୧)
୧୪ ଧର୍ମ (୩)
୧୫ ମୋକ୍ଷାଦି ସକଳ (୫)
୧୬ ହୋଇବ (୧)
୧୭ କହିବ ବିଶେଷି (୧)
୧୮ ସୁଖ (୧)

ସମସ୍ତ ଭୟ ହରେ[୧] ହରି ଚରଣ
ଭଜି[୨] ଗୋବିନ୍ଦ ପଦେ ବେଗେ[୩] ଶରଣ । ୨୬୭ ।
ପ୍ରୟାଗ ପ୍ରଭାସ ପୁଷ୍କର[୪] ଗୋମତୀ
ଗଙ୍ଗା ଯମୁନା ନର୍ମଦା ସରସ୍ୱତୀ । ୨୬୮ ।
ଗୟା[୫] ଗଣ୍ଡକି ଗୋଦାବରୀ କାବେରୀ
ଗଙ୍ଗା[୬] ସାଗର ସଙ୍ଗମ ଆଦି କରି । ୨୬୯ ।
ପୁଣ୍ୟତୋୟା[୭] ବ୍ରାହ୍ମଣୀ[୮] ବଇତରଣୀ
ଚନ୍ଦ୍ରଭାଗା ବିନ୍ଧୁ[୯] ଇନ୍ଦ୍ର[୧୦] ପୁଷ୍କରଣୀ । ୨୭୦ ।
କୃଷ୍ଣାଞ୍ଜଳୀ[୧୧] ଗଣ୍ଡକୀ କୃଷ୍ଣ-ବେଣୀ
ଅଘ ନାଶନୀ ସମସ୍ତ[୧୨] ତୀର୍ଥ ଶ୍ରେଣୀ[୧୩] । ୨୭୧ ।
ତାପ୍ତୀ ଉତ୍ପଳା[୧୪] ସରଯୂ ବେଦ[୧୫]-ମତୀ[୧୬]
ସମୋଦ୍ର[୧୭] ଆଦି ପୁଣ୍ୟ[୧୮] ଜଳେ ମଜ୍ଜନ୍ତି[୧୯] । ୨୭୨ ।
ତିନ କୋଟି ଅର୍ଦ୍ଧ କୋଟି ତୀର୍ଥ ଜଳେ
ସ୍ନାହାନ[୨୦] କଲେ ଯେ[୨୧] ସକଳ[୨୨] ପୁଣ୍ୟ ଫଳେ[୨୩] । ୨୭୩ ।
ବିଧିମତେ ସର୍ବ ତୀର୍ଥରେ ମଜ୍ଜିଲା
ଅଭେ ପାଦ ପଦ୍ମେ ଯେ ପ୍ରାଣୀ ଭଜିଲା । ୨୭୪ ।

---

୧ ସୁଖ ସ୍ଥାନ (୧)
୨ ଦ୍ରୋହୀ (୧)
୩ ବେଗେ ପଦେ (୧)
୪ ପୁଷ୍କର ପ୍ରଭାସ (୫)
[ଗୟାର ଫଲ୍‌ଗୁ ନଦୀ କୂଳରେ ଶ୍ରାଦ୍ଧ ତର୍ପଣ କରାଯାଏ ।]
୫ ଗାୟା
୬ ସିନ୍ଧୁ
୭ ପୁଣ୍ୟାକ୍ତ ନଦୀ (୫) ପୁନ୍ୟ ପୂର୍ଣ୍ଣା (୪) ବସ୍ତ୍ର ପୁନ୍ୟ (୬)
୮ ବାରୁଣୀ (୧)
୯ ସିନ୍ଧୁ (୧) ତେ (୩)
୧୦ ଚନ୍ଦ୍ର (୧)
୧୧ କର୍ଣ୍ଣାଞ୍ଜଳି (୨) କର୍ଣ୍ଣାଞ୍ଜଳୀ (୩)
୧୨ ସକଳ (୪) ମୁକତି (୨)
୧୩ ଶ୍ରେଣି (୪)
୧୪ ଉତ୍ପଳା ଯେ (୩, ୪)
୧୫ ବେଣୀ (୨)
୧୬ ରେବତୀ (୩)
୧୭ ସମୁଦ୍ର (୧)
୧୮ ଗୁଞ୍ଜ (୪)
୧୯ ମିସନ୍ତି (୨)
୨୦ ସ୍ନାନ (୧)
୨୧ ଯେ କଲା (୧) ବଳେ ହୁଅଇ (୪)
୨୨ ସର୍ବ (୨)
୨୩ ଫଳ (୨) ଯେତେ ଫଳ (୪)

ଅଭେ ପାଦ ପଦ୍ମ ଭଜିଲା ଯେ ପ୍ରାଣୀ
ସର୍ବ ତୀର୍ଥ ଫଳ ଲଭିଲା ସେ ପୁଣି[୧] । ୨୭୫ ।

ଶ୍ରୀ ବିଷ୍ଣୁ ଶିବ ପୁରାଣ ଭାଗବତ
ମାର୍କଣ୍ଡ ଅଗ୍ନି ପୁରାଣର ଯେତ[୨] । ୨୭୬ ।

ଭବିଷ୍ୟ ପୁରାଣ ବରେହା[୩] ପୁରାଣ
ସ୍କନ୍ଦ ବାମନ କୂର୍ମ ଏ ଆଦି ଜାଣ[୪] । ୨୭୭ ।

ଗରୁଡ଼ ପୁରାଣ ଶ୍ରୀ ପଦ୍ମ ପୁରାଣ
ରାମାୟଣ ମହାଭାରତ ବଖାଣ[୫] । ୨୭୮ ।

ଶ୍ରୀ ପଦ୍ମ ଚରଣେ କଲା ଯେ ଆଶ୍ରୟେ
ସର୍ବ ପୁରାଣ ଶୁଣିବା ଫଳ[୬] ପାଏ । ୨୭୯ ।

ବ୍ରହ୍ମ ହତ୍ୟା ଆଦି ଯେତେ ପାପ ଅଛି
ଗୋଟିକେ କୋଟି[୭] ପ୍ରାୟଶ୍ଚିତ ବହି[୮] ଅଛି । ୨୮୦ ।

ଅଭେ ପାଦପଦ୍ମେ ପଶିଲେ[୯] ଶରଣ
ସମସ୍ତ[୧୦] ପାପେ[୧୧] ପ୍ରାୟଶ୍ଚିତ ଶ୍ରୀ ଚରଣ[୧୨] । ୨୮୧ ।

କୁରୁକ୍ଷେତ୍ରେ[୧୩] ସୂର୍ଯ୍ୟ ଗ୍ରହଣ କାଳରେ[୧୪]
ସ୍ନାହାନ କଲେ ପୁଣ୍ୟ ନଦୀ ଜଳରେ[୧୫] । ୨୮୨ ।

---

୧ ପ୍ରାଣୀ (୫)
୨ ପୁରାଣ ଅଗ୍ନିକର ତତ୍ତ୍ୱ (୨)
୩ ବରାହ ବାୟୁବ୍ୟ (୧)
୪ "ସ୍କନ୍ଦ ---ଜାଣ" (୨) ପୋଥିରେ ନାହିଁ । ଏଠାରେ "ଗରୁଡ଼ ପୁରାଣ ନାରଦ ପୁରାଣ" (୨)ରେ ଅଛି ।
୫ (୨୭୮) ପଦ ବଦଳରେ (୨) ପୋଥିରେ ଅଛି "ପଦ୍ମ ପୁରାଣ ଆଦି ଶ୍ରୀ ରାମାୟଣ । ମହାଭାରତ ଆଦି କଲା ବଖାଣ ।"
୬ ଶୁଣିଲା ଦେହ୍ନ (୨)
୭ ଭିତେନ(୩,୫) } କୋଟିଏ ପ୍ରାୟଶ୍ଚିତ
୮ କୋଷି (୧) } ଦହନ ନୋହୁଛି(୨)
୯ ପଶନ୍ତେ (୨)
୧୦ ସର୍ବ (୧)
୧୧ (୧)ରେ ନାହିଁ
୧୨ ଶ୍ରୀ ଚରଣ ସ୍ମରଣ (୧)
୧୩ କ୍ଷେତ୍ର (୧)
୧୪ ଗ୍ରହଣର କାଳେ (୧)
୧୫ ଯେ କରେ ପୁଣ୍ୟ ତୀର୍ଥ ଜଳେ (୧) କଲା ପଞ୍ଚ ନଦୀ ଜଳରେ (୫)

ଶାଳଗ୍ରାମ ଶିଳା[୧] ସୁବର୍ଣ୍ଣ ସହିତେ
ତିଳ ଅନ୍ନ ବସ୍ତ୍ର ଗୋରୁ[୨] ଆଦି[୩] ଯେତେ । ୨୮୩ ।

ଯଦ ପାତ୍ରେ ବିପ୍ରେ[୪] ସର୍ବ ଦାନ ଦେଲା
ଅଭେ ପାଦ ପଦ୍ମେ ଯେହୁ ଆଶ୍ରେ କଲା[୫] [୬]। ୨୮୪ ।

ଅଭେ ପାଦ ପଦ୍ମେ ଭଜିଲା ଯେ ପ୍ରାଣୀ
ସର୍ବ ଯଜ୍ଞ ଫଳ ଲଭିଲା[୭] ସେ ପ୍ରାଣୀ[୮] । ୨୮୫ ।

ଅଭେ ପାଦ ପଦ୍ମେ[୯] ଯେ ପ୍ରାଣୀ[୧୦] ରସିଲା[୧୧]
ସମସ୍ତ ପୁଣ୍ୟ ଆଶ୍ରମରେ ବସିଲା । ୨୮୬ ।

ଅଭେ ପାଦପଦ୍ମେ ଯେହୁ ଆଶ୍ରେ କଲା[୧୨]
ଅଷ୍ଟାଙ୍ଗ ଯୋଗ ସର୍ବ ଜ୍ଞାନ[୧୩] ସାଧିଲା । ୨୮୭ ।

ଅଯୋଧ୍ୟା ମଥୁରା ଗୟା[୧୪] କାଶୀ ପୁରୀ[୧୫]
ଅବନ୍ତ ଦ୍ୱାରବତୀ କାଞ୍ଚି[୧୬] ନଗରୀ । ୨୮୮ ।

ସମସ୍ତ ମୋକ୍ଷ[୧୭] କ୍ଷେତ୍ରେ କଲା ନିବାସ
ହରି ଚରଣେ ଯେ କଲା ପ୍ରତି[୧୮] ଆଶ । ୨୮୯ ।

ସଂସାର ତାପେ ଅକ୍ଷୟେ ଶ୍ରୀଚରଣ[୧୯]
ଭଞ୍ଜ ଗୋବିନ୍ଦ ଚନ୍ଦ୍ରିଁ[୨୦] ପଶେ ଶରଣ । ୨୯୦ ।

---

୧ ଦୃଷ୍ଟି (୧)
୨ ବସ୍ତ୍ର ଗୋରୁ ଅନ୍ନ (୧; ଅଗ୍ନି (୨)
୩ ଗୋରୁ (୨)
୪ ଅନ୍ନ ବସ୍ତ୍ର ଆଦି (୧)
୫ ଯେ ପ୍ରାଣୀ ଭଜିଲା (୧)
୬ (୨) ପୋଥିରେ କମ ଓଳିଟା ଅଛି
ଯଥା-"ଅଭେ ପାଦ ପଦ୍ମେ ଯେ ପ୍ରାଣୀ
ପାଇଲା । ଯଳ ପାତ୍ର ଆଦି ସର୍ବ ଦାନ
ଦେଲା ।"
୭ ଲଭିଲା (୧)
୮ ପୁଣି (୧)
୯ ପଦ୍ମ (୧)
୧୦ ଯେହୁ (୧) ଯେ ନର (୫)
୧୧ ଭଜିଲା (୧) ଭମିଲା (୨, ୫)
୧୨ ଆରାଧିଲା (୩)
୧୩ ଜ୍ଞାନ ମାନ (୩) } ୨୮୭ ପଦ(୧)ଓ (୨)ରେ ନାହିଁ ।
୧୪ ମାୟା (୫)
୧୫ ପୁର (୨)
୧୬ କାଞ୍ଚୁ (୧)
୧୭ ମୋକ୍ଷ (୧)
୧୮ ବଳାଇଲା (୫)
୧୯ ସକଳ ପାପୁଁ ସେ ପାଏ ନିସ୍ତାରଣ(୧)
୨୦ ବେଗେ (୨)

ସକଳ ସାହାସ୍ତ୍ରେ ଯେ[୧] କଥା କଣ୍ଣିଅଛେ[୨]
ଅଛେ ପାଦ ପଦ୍ମେ ନାଶେ ସର୍ବ ଭୟେ[୩] ।୨୯୧।
ଶ୍ରୁତି ସୁମୃତି କରେ ଯେଉଁ[୪] ବସ୍ତୁର
ଅଛେ ପାଦ ପଦ୍ମେ ଭଜିଲେ ନସ୍ତାର[୫] [୬]।୨୯୨।
ଯାହା ଗାବନ୍ତି ଭାରତ ରମା[୭]-ଏଣ
ଯାହା କହନ୍ତି[୮] ଅଷ୍ଟାଦଶ ପୁରାଣ ।୨୯୩।
ଚାରି ବେଦେ ଯାହା କରନ୍ତି ବଖାଣ
ଅଛେ ପଦ୍ମପାଦ[୯] ପରମ କାରଣ[୧୦] ।୨୯୪।
କେ ଅବା କହିବ[୧୧] ଚରଣ ମହିମା
କହି ନ ପାରନ୍ତି ଶେଷ ଶିବ[୧୨] ବ୍ରହ୍ମା ।୨୯୫।
ଅଛେ ପାଦ ପଦ୍ମ ସର୍ବ ସୁଖ ଦାତା
ଚରଣ ଚନ୍ଦ୍ର[୧୩] ଶିବ ସୁର[୧୪] ବିଧାତା ।୨୯୬।
ସର୍ବ ଲାଭ ଭଏ ଚରଣ ଦ୍ରଶନେ
ସର୍ବ ପାପ କ୍ଷଏ ଚରଣ ଭଜନେ [୧୫]।୨୯୭।
ସର୍ବ ଭାବେ ହୁଅ ଚରଣ ଦରଶୀ
ଚରଣ ଧନ ଚଉବର୍ଗ[୧୬] ବରଷି ।୨୯୮।
କୋଟି କଳ୍ପାନ୍ତରେ ଚରଣ ସମ୍ଭବ
ଚରଣ ଜାତ କୋଟି କାମ ସୁରଭି [୧୭]।୨୯୯।

---

୧ ଶାସ୍ତ୍ରେ ଯେଉଁ (୧)
୨ ଉଦଯ୍ୟେ (୧) ଶକ୍ତିଏ (୨)
୩ ଅବିନାଶୀ ସୁଖ ଭୁଞ୍ଜୁ ହରି ପାଯ୍ୟେ (୧)
ଅବିନାଶୀ ସୁଖ ହରି ପାଦେ ପାଏ (୨)
୪ ଏହେ ନେକ (୨)
୫ ନିସ୍ତାର (୨)
୬ ୨୯୨ ପଦ (୧)ରେ ନାହିଁ ।
୭ ବିଜା (୧)
୮ ଗାବନ୍ତି (୧)
୯ ପାଦପଦ୍ମ (୧)
୧୦ ପ୍ରମାଣ (୩, ୫)
୧୧ କହିବା (୫)
୧୨ ଶଙ୍କର ଯା (୧)
୧୩ ବନ୍ଦେ (୧)
୧୪ ସୁର ଶିବ (୧) ସୃଷ୍ଟି କଲେ (୫)
୧୫ ପଦ (୨୯୭) ଭକ୍ତବଳ (୫)ମ ପୋଥିରେ ଅଛି ।
୧୬ ଚରଣୁ ପୀୟୂଷ କରନ୍ତେ (୧) ଚରଣ ଧନ ଚଉବର୍ଗ (୨).
୧୭ ପଦ (୨୯୯) କେବଳ (୨)ୟୁ ପୋଥିରେ ଅଛି ।

କୋଟି ସୂର୍ଯ୍ୟ ତେଜ ଯେବଣ ଚରଣ[୧]
କୋଟି ଚନ୍ଦ୍ର ସମ ତାପ ନିବାରଣ[୨] । ୩୦୦ ।

ସମସ୍ତ ଧର୍ମ ଉପରେ ଯେହୁ ରାଜା
ଅଟେ ପାଦ ପଦ୍ମ ମନେ କରି ପୂଜା । ୩୦୧ ।

କହନ୍ତେ କେ କହୁ[୩] ଚରଣ ମହିମା
କହି ନ ପାରନ୍ତି ଶେଷ ଶିବ ବ୍ରହ୍ମା[୪] । ୩୦୨ ।

ସର୍ବ ସମ୍ପତ୍ତି[୫] ସର୍ବ ଗତି ଚରଣ
ସର୍ବ ବିପତ୍ତି[୬] ଚରଣ ବିସ୍ମରଣ । ୩୦୩ ।

ହରି ଚରଣେ[୭] ସର୍ବ ସୁଖ ମିଳଇ
ଶରଣ ପଶଇ[୮] ଭଞ୍ଜି[୯] ଗୋବିନ୍ଦାଇ । ୩୦୪ ।

ସଂସାର ସାଗର ଗମ୍ଭୀର ବିସ୍ତାର[୧୦]
କ୍ରୋଧ ସ୍ୱରୂପେ ଅଛି ମହା[୧୧] କୁମ୍ଭୀର । ୩୦୫ ।

ମହା ସମୋଦ୍ରେ[୧୨] ନଉକା ବୁଡ଼ୁ[୧୩] ଅଛି[୧୪]
କାମ[୧୫]-ସର୍ପ ଆସି ନିବିଡ଼େ ଖାଉଛି[୧୬] । ୩୦୬ ।

ଲୋଭ ତରଙ୍ଗ[୧୭] ବଢ଼ଇ ଘନ-ଘନ
ମଦ[୧୮] ପ୍ରଖର[୧୯] ବହୁ ଅଛି ପବନ । ୩୦୭ ।

---

୧ ଯେଉଁ ଚରଣୁ ସମ୍ଭବ (୧)
୨ ଏହି ୨ୟ ପଦ "ଚରଣ ଜାତ କୋଟି କାମ ସୁରଭି" (୧) ପୋଥିରେ ଅଛି
୩ କହୁ କେ (୧)
୪ କହୁ ଅଛି ଯାହା ଶ୍ରବଣେ ଶୁଣିମା (୧)
୫ ସମ୍ପତ୍ତି ଯେ (୫)
୬ ଦୁର୍ଗତି (୫)
୭ ଚରଣୁ (୩)
୮ ପଶିଲି (୨)
୯ ଦ୍ରୋହୀ (୩)
୧୦ ଅତ୍ୟନ୍ତ ଗଭୀର (୧), ଗର୍ଭିର ବିସ୍ତାର (୫)
୧୧ ମାୟା (୧)
୧୨ ଅବ୍ଧିରେ (୧), ଅବ୍ଧିରେ ଯେ (୫), ଅର୍ଣ୍ଣବେ (୩)
୧୩ ପଡ଼ି (୩)
୧୪ ବୁଡ଼ାଉଛି (୫)
୧୫ କାଳ (୫)
୧୬ ଗୀଳୁଛି (୧), ବେଢ଼ିଛି (୩)
୧୭ ହରଷ (୨)
୧୮ ମତ୍ତ (୧)
୧୯ ପ୍ରଖରେ (୧), ଗର୍ବରେ (୨)

ବ୍ୟାଧି ରନ୍ଧ୍ର[1] ଜଳ ନାବରେ[2] ପଶଇ[3]
ବିଷୟୀ[4] ଭ୍ରମିର ତଟ ନ ଦିଶଇ ।୩୦୮।
ମତ୍ସର[5] ଘବେ କେରୁଆଳ ହଜଇ[6]
ଭଞ୍ଜି[7] ଗୋବର୍ଦ୍ଧ ଭବଜଳେ ମଜ୍ଜଇ[8] ।୩୦୯।

ସର୍ବ ସଙ୍କଟ ହରେ ହରି ଚରଣ
ଦୁର୍ବୁଦ୍ଧି ଅନ୍ଧ[9] ନ ପଶଇ[10] ଶରଣ ।୩୧୦।

କରତେ ଅପରାଧ ସ୍ୱାମୀ[11] ମୋହର
ସବୁ ଠାରେ[12] ଶୁଣୁ ତୁ[13] ଦୟା ସାଗର ।୩୧୧।

ଭୂମିରେ[14] ପାଦ ଖସନ୍ତେ[15] ଯେତନ୍ତେ[16] ପ୍ରାଣୀ
ଅନ୍ୟ[17]କେ ଧରିବ ଧରଇ[18] ଧରଣୀ ।୩୧୨।

ଅପରାଧ ଯେତେ କଲି[19] ଶ୍ରୀ ଚରଣ
ଅଭେ ପାଦ ପଦ୍ମେ ପଶିଲି ଶରଣ ।୩୧୩।

ସମୋଦ୍ର[20] ଭିତରେ ବୋହିତ[21] ଭାସଇ
ଦୟା କଲେ[22] ନାଥ[23] କୂଳରେ[24] ଲାଗଇ[25] ।୩୧୪।

ଦୟା ସିନ୍ଧୁ ଯେବେ କରିବୁ ଟି[26] ହେଳା
ଭବ ସାଗରେ ବୁଡ଼ିଲା ମୋର[27] ଭେଳା ।୩୧୫।

ଦୟା ସିନ୍ଧୁ ନାମ ଜଗତେ ପ୍ରକାଶ
ତେଣୁ ତୁମ୍ଭଙ୍କୁ ମୁଁ କରିଅଛି[28] ଆଶ ।୩୧୬।

---

୧ ରୁଦ୍ର (୨) ଚନ୍ଦ୍ର (୩)
୨ ନାଉରେ (୧)
୩ ବସାଇ (୩)
୪ ବିଷୟୀ (୧, ୩)
୫ ମୋ ଛାର (୩)
୬ ହଜାଇ (୨, ୫), ଭଜଇ (୩)
୭ ଦ୍ରୋହୀ (୩)
୮ ପାଦପଦ୍ମ ଭଜଇ (୧) ଦୁଃଖ କଲେ ମଜ୍ଜଇ (୩)
୯ ଅଜ୍ଞେ (୧)
୧୦ ପଶିଲି (୧, ୫)
୧୧ ପ୍ରଭୁ (୧)
୧୨ ପରେ (୩)
୧୩ ଶୁଣ ହେ (୨)
୧୪ ଭୂମିରୁ (୧)
୧୫ ଖସିଲେ (୨), ଖସଇ (୩)
୧୬ ଯେମନ୍ତେ (୨), ଯେତେ (୩)
୧୭ ପଡ଼ନ୍ତେ ଅଜ୍ଞ (୨)
୧୮ (୨)ରେ ନାହିଁ
୧୯ କଲି ଯେତେ (୨)
୨୦ ସମୁଦ୍ର (୧)
୨୧ ବୋଇତ (୧)
୨୨ ହରି ଦୟା କଲେ (୧)
୨୩ (୧)ରେ ନାହିଁ ।
୨୪ କୂଳକୁ (୧)
୨୫ ଲଗାଇ (୨)
୨୬ ତୁମ୍ଭେ ଦୟାକୁ କରିବ ଯେବେ (୫)
୨୭ ମୋର ବୁଡ଼ିବ (୧) ଭାସୁଛି ମୋର (୩)
୨୮ ତେଣୁ ତରିବାକୁ କଲି ପ୍ରତି (୧)

ଭଞ୍ଜ ଗୋବନ୍ଧକୁ ଆତଙ୍କ ନାଗଇ[୧]
ଅଭେ ପାଦ ପଦ୍ମେ ଶରଣ ମାଗଇ[୨] ।୩୧୭।
ଦଦରା ନାବେ ବସିଛି ଭବ[୩] ଜଳେ
କୃପା କଲେ ପ୍ରଭୁ ଲାଗିବି ମୁଁ[୪] କୂଳେ ।୩୧୮।
ପତିତ ପାବନ ଚରଣ[୫] ତେ ହର.
ତେଣୁ ତରିବାକୁ ଭରସା ମୋହର ।୩୧୯।
ମାତା ପିତା ସଖା ବନ୍ଧୁ[୬] ଶ୍ରୀ ଚରଣ
କଳି କଳୁଷ କାଳ-ଭୟ ହରଣ ।୩୨୦।
ସରଣ[୭] ମାଗେ[୮] ଦନ୍ତେ ଘେନି[୯] ତରଣ
ଚିତ୍ତେ ଚିନ୍ତଇ[୧୦] କରି[୧୧] ସ୍ୱାମୀ କାରଣ[୧୨] ।୩୨୧।
ଭଞ୍ଜ[୧୩] ଗୋବିନ୍ଦ ତାଙ୍କେ[୧୪] ଦୟା ସାଗର
ଅଭେ ପାଦ ପଦ୍ମେ ବିଚ୍ଛେଦ ନ[୧୫] କର ।୩୨୨।
ନୃପତି ଲୋଚନ ଶରଣ[୧୬] ଭ୍ରମର[୧୭]
ଶରଣ ରଜା ଚନ୍ଦ୍ର ଛାୟା[୧୮] ଉପର[୧୯] ।୩୨୩।
ତ୍ରିଲୋଚନ ଦେବ ନୃପତି[୨୦] କୁମର
ଭୃତ୍ୟର ଭୃତ୍ୟ ଗୋବିନ୍ଦାଇ ଭ୍ରମର[୨୧] ।୩୨୪।

---

୧ ଲାଗଇ (୧)
୨ ମଣାଇ (୩)
୩ ସ୍ଥିତ (୧)
୪ ଲାଗି ଯାରେ ଆର (୧),
ଦଣ୍ଡେ ଆର ଲଗାଇବା (୩)
କର୍ଣ୍ଣଧାର ଲଗାଇବା (୪)
୫ ସରଣ (୨, ୪)
୬ ବନ୍ଧ ଶାଖା (୧)
୭ ଚରଣେ (୧)
୮ ଲାଗୁ (୧)
୯ ଧରି (୧)
୧୦ ଚଢୋଇ (୧)
୧୧ (୧)ରେ ନାହିଁ
୧୨ ରଙ୍ଗାଚରଣ (୧),
ରଖ ପ୍ରଭୁ ସରଣ (୨)
୧୩ ଦ୍ରୋହୀ (୩)
୧୪ କି ରଖ (୨)
୧୫ ଚିତ୍ତ ଛେଦନ (୨)
୧୬ ସଙ୍ଗତେ (୧) ସରଣ (୪)
୧୭ ତୋହୋର (୧), ଲୋଚନେଣ
ଚିତ୍ତୁଁ ଭ୍ରମର (୩)
୧୮ ଛାୟାଛନ୍ନ (୪)
୧୯ ପଦ୍ମ ପାଦ ବନ୍ଧୁ ନାହିଁ ପ୍ରତୀକାର (୧)
୨୦ ସୁନ୍ଦର (୪)
୨୧ ତୋହାର (୧)

ନାମର ମହିମା କେ ଅବା ଜାଣିବ
ଚରଣ ମହିମା କେ ଅବା କହିବ [୭] । ୩୨୫ ।
ଗୋପର ଗୋପୀ ଚରଣେ ଚିତ୍ତ ଦେଲେ[୮]
ଗଲ୍ଲ କଷ୍ଟମାନ ଭଗତ[୯] ଲଭିଲେ । ୩୨୬ ।
ଯଜ୍ଞେ ବପ୍ରନାରୀ ନରତେ ଭଜିଲେ
ଅଭେ ପାଦ ପଦ୍ମେ ଗୋପରେ ଦେଖିଲେ[୧୦] । ୩୨୭ ।
ଷୋଳ ସସ୍ର କନ୍ୟା ଚରଣ ଚିହ୍ନିଲେ[୧୧]
ଜଗତ ପିତା ପତି ଭାବେ ପାଇଲେ[୧୨] । ୩୨୮ ।
ଯେ ର ତପ କଲେ ଅଷ୍ଟପାଟ ବଂଶୀ
ଅତିଭାଗ୍ୟେ ନଷ୍ଟେ[୧୩] ଚରଣ ଦରଶୀ । ୩୨୯ ।
ଯେତ୍ତୁ[୧୪] ଯେଉଁ ରୂପେ[୧୫] ମନରେ ଭାବନ୍ତି
ସେତୁ ରୂପେ ଫଳ ସେହି ସେ ଲଭନ୍ତି । ୩୩୦ ।
ବୁଡ଼ିଲି ମୁଁ ଘୋର ସାଗରେ[୧୬] ଉଦ୍ଧର
ଭଞ୍ଜ ଗୋବିନ୍ଦକୁ ଲାଗେ ଭୟଙ୍କର । ୩୩୧ ।

---

୧ (୨)ଯୁ ପୋଥିରେ ପ୍ରଥମ ଧାଡ଼ି ଦ୍ୱିତୀୟରେ ଓ ଦ୍ୱିତୀୟ ଧାଡ଼ି ପ୍ରଥମରେ ଅଛି ।
୨ ଚିନ୍ତିଲେ (୨)
୩ ଭ୍ରକତି (୧)
୪ ଲଭିଲେ (୧)
୫ ଚିନ୍ତନ୍ତି (୨)
୬ ଘେଣେ ଲଭନ୍ତି (୨) [ପଦ ୩୨୮ର ସାମ୍ୟ ପଦ ୧୪୯ ସଙ୍ଗେ ଦେଖାଯାଇପାରେ । ]
୭ ତୋର (୨)
୮ ପେ (୧)
୯ ରୂପରେ (୧)
୧୦ ମୋହ ସାଗରରୁ (୧)

ଏଣୁ ପୁଣ ପୁଣ ତୁମ୍ଭ ଶ୍ରୀ ଚରଣ[୧]
କୋଟି ପ୍ରଣାମ[୨] କରଇ ହୃଦରେଣ[୩] ।୩୩୨।

ଯେଉଁ ଚରଣର[୪] ଅନନ୍ତ ମହିମା
ମୁହିଁ କି ଜାଣିବ ପାମର ଦୁରାତ୍ମା[୫] ।୩୩୩।

କେଉଁ ଜନମରେ କରିଥିଲି ଦୋଷ
ଏବେ ସେ ଦୁଃଖ ମୁଁ ଲଭିଲି ଅଶେଷ[୬] ।୩୩୪।

କେତେ ଦୁଃଖ ନାଶେ ଅଭୟ ପଞ୍ଜର
[୭]ମହା ପ୍ରଭୁ ମୋତେ ବାରେ[୮] ରକ୍ଷାକର ।୩୩୫।

ତ୍ରୈଲୋକ୍ୟର ନାଥ ଦୀନ ଜନ[୯] ବନ୍ଧୁ
ଆତଙ୍କ ନାଶନ[୧୦] ତୁମ୍ଭେ କୃପାସିନ୍ଧୁ[୧୧] ।୩୩୬।

ଅଭୟ ଚରଣେ ଚିତ୍ତ ବୃତ୍ତି ଥାଉ[୧୨]
ମିଥ୍ୟା[୧୩]ମାୟା ମୋହ ମନସା ନ ଯାଉ[୧୪] ।୩୩୭।

ଶ୍ରୀ ଚରଣେ[୧୫] ଧ୍ୟାନ[୧୬] କରତେ କରୁଛି
ଅଭୟ ଚରଣେ ଶରଣ ମାଗୁଛି ।୩୩୮।

ତୁମ୍ଭେ ସତେ ଯେବେ[୧୭] ଦୁଃଖୀ ଜନବନ୍ଧୁ
ଭଞ୍ଜ ଗୋବିନ୍ଦେ ଉଦ୍ଧର କୃପାସିନ୍ଧୁ[୧୮] ।୩୩୯।

ଇନ୍ଦ୍ରିୟ ବୁଦ୍ଧି ଚେତନା[୧୯] ଅହଙ୍କାର
ପଞ୍ଚ ଭୂତାତ୍ମା ଅନ୍ତଃକ୍ଷ ସମୀର[୨୦] ।୩୪୦।

---

୧ ତେଣୁ ମନ ମୋର ତୁମ୍ଭଚରଣରେ(୧)
୨ ପ୍ରମାଣ (୧)
୩ ଯେ କର ହୃଦୟରେ (୧)
୪ ଚରଣରେ (୧)
୫ ଯାଣିମିକ ମୁଁ ତୋ ଚରଣ ମହିମା(୨)
୬ ଲଭିଲି ସେ ଦୋଷ ଅସେସ ବିସେସ(୨)
୭ ଏବେ (୧)
୮ (୧) ରେ ନାହିଁ ।
୯ ତୁମ୍ଭେ ଦୀନ (୧)
୧୦ ଭଞ୍ଜନ (୨)
୧୧ କୃପା ମଏ ସିନ୍ଧୁ (୨)
୧୨ ରହୁ (୨)
୧୩ ମିଛ (୨)
୧୪ ଥାଉ (୧)
୧୫ ଚରଣ (୧)
୧୬ ଧ୍ୟାନ ଯେ (୧)
୧୭ ମହାପ୍ରଭୁ (୧)
୧୮ ଗୋବିନ୍ଦଙ୍କ ଉଧରିବ ସିନ୍ଧୁ (୨)
୧୯ ଚେତନା ବୁଦ୍ଧି ଇନ୍ଦ୍ରିୟ (୨)
୨୦ ପଞ୍ଚଭୂତ ମନ ତାରିଛ ସମିରେ (୨)

ଜଳାନଳ[1] ସ୍ଥଳ ଆଦି ବସୁମତୀ
ବୁଦ୍ଧି ଅହଙ୍କାରେ[2] ଯାହାକୁ ସେ ଚିନ୍ତ[3] ।୩୪୧।
ଜୀବ ପରମ ଆତ୍ମା ଅଟେ ଷୋଡଶ
ଏ ଆଦି ସୃଷ୍ଟି ଆତଯାତ ଅଶେଷ[4] ।୩୪୨।
ଏହି ସୃଷ୍ଟି ଅଙ୍ଗେ[5] ପ୍ରଭୁ ଇଚ୍ଛା କରି
[6]ଯୋଗ ନିଦ୍ରାରେ[7] ଶୟନ[8] କରିହରି ।୩୪୩।
ଯେ ବିଷ୍ଣୁ ନାଭିରୁ[9] ସମ୍ଭୂତ କମଳ
ପ୍ରକାଶି ଆଚ୍ଛାଦି ଗଗନ[10] ମଣ୍ଡଳ ।୩୪୪।
ବ୍ରହ୍ମା ଯେ ହୋଇଲେ ତହିଁ ଉତପତ୍ତି
ପ୍ରଜାପତିଙ୍କର ନାଥ ସେ ଅଟନ୍ତି ।୩୪୫।
ସେ ବ୍ରହ୍ମା ଶରୀରୁ ସୃଷ୍ଟି ଆତଯାତ
ସର୍ଜନା[11] କରି ଯେ ପ୍ରକାଶେ ଜଗତ[12] ।୩୪୬।
ଜ୍ଞାନ[13] ଚକ୍ଷୁରେ ସଂସାରରେ ବିହରି
ଯେ ବିଷ୍ଣୁଙ୍କୁ ଧ୍ୟାନ କରେ[14] ବ୍ରହ୍ମଗୃହୀ ।୩୪୭।
ସହସ୍ରେ ପାଦ ସହସ୍ରେ ଉରୁ[15] ଭୁଜ
ଶିର ବଦନ ନାସା ସହସ୍ରେ ତେଜ ।୩୪୮।
ସହସ୍ରେ ଲୋଚନ ସହସ୍ରେ ଶ୍ରବଣ
ବସନ କୁଣ୍ଡଳ ଅସଂଖ୍ୟ ଭୂଷଣ[16] ।୩୪୯।
ମଣି କଙ୍କଣ ସର୍ବାଙ୍ଗେ ଝଟକନ୍ତି
ପ୍ରଭୁ ଦିଶନ୍ତି ଶ୍ୱେତ ରୂପ କାନ୍ତି[17] ।୩୫୦।

---

୧ ଅନଳ ଜଳ (୨)
୨ ଅହଂକାର (୧)
୩ ସେବନ୍ତି (୧)
୪ ବିଶେଷ (୧)
୫ ସଙ୍ଗେ (୧)
୬ ଜନେ (୧)
୭ ନିଦ୍ରା (୧)
୮ ସ୍ୱପ୍ନ (୧)
୯ ନାଭି କମଳରୁ (୧)
୧୦ ଭୁବନ (୨)
୧୧ ପ୍ରକାଶ (୧)
୧୨ ପ୍ରକାଶି ପଦାର୍ଥ (୨)
୧୩ ଅନେକ (୨)
୧୪ ଦିବ୍ୟ ସ୍ୱରୂପକୁ ଧ୍ୟାଏ (୧)
୧୫ ଭିବ (୨)
୧୬ ଅମୂଲ୍ୟ ରତନ (୧)
୧୭ ଅତ୍ୟନ୍ତ ରୂପବନ୍ତ (୨)

ଭଜି ଗୋବିନ୍ଦ ସେ ଚରଣେ ଶରଣ
ମହାପ୍ରଭୁ ମୋତେ ରଖ ନାରାୟଣ ।୩୫୧।
ସୃଷ୍ଟିର ଅନ୍ତେ ସେ[1] ପ୍ରଭୁ ମାୟାଧର
ହୋଇଲେ ପ୍ରଭୁ ଅନେକ ଅବତାର ।୩୫୨।
ତତ୍ତ୍ୱରୁ ମୂଳବୀଜ ହେ ବ୍ରହ୍ମ[2] ତୁହି
ଜଗତ[3] ଭିତରେ ଯେ[4] ବ୍ରହ୍ମ ବୋଲାଇ ।୩୫୩।
ଦେବ ମନୁଷ୍ୟ[5] ପତଙ୍ଗ[5] ଆଦି କରି
ନିଗମେ ଗୋଚରେ ଯୋଗ ସାଧି[6] ହରି ।୩୫୪।
ପ୍ରଥମରେ ପ୍ରଭୁ କୁମାର[7] ବପୁସେ
ସୃଷ୍ଟି ଉଦଏ ସେ ପରମ[8] ବିଶେଷେ ।୩୫୫।
ଅତି ଦୁସ୍ତର ଯେ[9] ମହା ଘୋର ବ୍ରତେ[10]
ଯେ ଅବା ସାଧନ୍ତି ଅତି ଦୃଢ଼ ଚିତ୍ତେ ।୩୫୬।
ପ୍ରଥମ କଳ୍ପରେ[11] ସୃଷ୍ଟି କ[12] ଭିଆଇ
ଆତ ଯାତ କରେ ଜୀବ[13] ରୂପ ହୋଇ ।୩୫୭।
ଦ୍ୱିତୀୟ କଳ୍ପରେ[14] ସୃଷ୍ଟିର[15] ଆଗମେ
ଯଜ୍ଞେଶ୍ୱର ଯାତ ଘୋର ଯେ ଦୁର୍ଗମେ[16] ।୩୫୮।
ପୂର୍ବ କଳ୍ପରେ[17] ପ୍ରଳୟ କାଳ[18] ବେଳେ
ଜଳେ ବୁଡ଼ି[19] ପୃଥ୍ୱୀ ଥିଲା ରସାତଳେ ।୩୫୯।

---

୧ ଅନ୍ତର (୧)
୨ ତୁ ମୂଳ ବୀଜ ସୃଷ୍ଟି କରତା (୨)
୩ ସଂସାର (୨)
୪ ସେ (୨)
୫ ନର ଗୃହ ଖାନ (୧)
୬ ବଚନେ ସମ୍ପାଦ ଶ୍ରୀ (୧)
୭ କୁମର (୨)
୮ ଅତ ଯାତ (୧)
୯ ସେହୁ (୨)
୧୦ ତତପ (୨)
୧୧ କଲ୍ପେ ହର (୧)
୧୨ (୧) ରେ 'କ' ନାହିଁ
୧୩ ନିଜ (୧)
୧୪ ହର ରୂପ (୧)
୧୫ (୧) ରେ 'ର' ନାହିଁ
୧୬ ଅରଣ୍ୟେ (୨)
୧୭ ଜିଣ୍ଟେ (୧)
୧୮ କାଳର (୧)
୧୯ ତାଙ୍କ ରୂପେ ୧)

ତାହା ଉତ୍ତର ଯେ[୧] ଦେବ ନରହରି
ବରାହ ରୂପେ[୨] ପୃଥ୍ୱୀ କ ଦନ୍ତେ ଧରି[୩] । ୩୬୦ ।
ଘୋର[୪] ଦୁସ୍ତରୁ ଉଦ୍ଧରି ବସାଇଲେ
ପୃଥ୍ୱୀ ସ୍ଥିର କରି ମନ୍ଦରେ ବାନ୍ଧିଲେ[୫] । ୩୬୧ ।
ଦେବାସୁର ଅର୍ଥେ ସାଗର ମନ୍ଥିଲେ
କୂର୍ମ ରୂପେ ପୃଥ୍ୱୀ ପୃଷ୍ଠରେ ଧଇଲେ[୬] । ୩୬୨ ।
ତୃତୀୟରେ[୭] ସ୍ୱର୍ଗେ[୮] ନିଜ ରୂପ ଧରି
ନାରଦ ରୂପେ ଯେ ଅବତାର ହରି[୯] । ୩୬୩ ।
ଶ୍ରୀକୃଷ୍ଣ ସ୍ୱରୂପେ ଭକତଙ୍କ ହିତେ
ନିଷ୍କାମ ଭାବରେ ଭ୍ରମନ୍ତି ଜଗତେ[୧୦] । ୩୬୪ ।
ଚତୁର୍ଥରେ ହରି ଦେବତନ୍ତ୍ରୁ[୧୧] କାଣ୍ଡେ
ଧର୍ମ ପ୍ରକାଶିଲେ ଗୃହି ବେଦ ଖଣ୍ଡେ[୧୨] । ୩୬୫ ।
ସେହି ପୁଣ ହେଲେ ନର ନାରାୟଣ
ସର୍ଜନା କଲେ ଧର୍ମର ଆଚରଣ । ୩୬୬ ।
ତପ[୧୩] ଯେ ସାଧନା କଲେ[୧୪] ଦୃଢ଼ ଚିତ୍ତେ
ବାଞ୍ଛିତରେ[୧୫] ସୃଷ୍ଟି କଲ୍ପେ[୧୬] ଅବିରତେ । ୩୬୭ ।
ପଞ୍ଚମ କଲ୍ପରେ[୧୭] ଦେବହୂତି ଉଦରେ[୧୮]
ନାମ ବହିଲେ[୧୯] କପିଳ ମୁନିବରେ[୨୦] । ୩୬୮ ।

---

୧ ଉଧରନ୍ତା (୨)
୨ ରୂପ (୧)
୩ ଉଦ୍ଧରି (୧)
୪ ମହା (୨)
୫ ନିସ୍ତାର କରି ମନ୍ଦରକୁ ଧଇଲେ (୧)
୬ କୂର୍ମ ରୂପେ ସାଗରକୁ ଯେ ମନ୍ଥିଲ । ଦେବ ଦାନବ ଅର୍ଥେ ପୃଷ୍ଠେ ବହିଲ ॥ (୨)
୭ ତୃତୀୟ (୧)
୮ ସ୍ୱର୍ଗରେ (୧)
୯ ନାରଦ ବ୍ରହ୍ମାଙ୍କୋଳରେ ଅବତରି (୧)
୧୦ ଦେବଙ୍କ ସହିତେ (୧)
୧୧ ଦେବଙ୍କର (୧)
୧୨ ଧର୍ମ ପ୍ରକାଶିଣ ତାହିଁଲେ ପାଷଣ୍ଡେ (୧)
୧୩ ବ୍ରତ (୧)
୧୪ କଲ୍ପ (୧)
୧୫ (୨) ରେ 'ରେ' ନାହିଁ
୧୬ କଲିଲେ (୧)
୧୭ କଲେ (୧)
୧୮ ସିଂହ ଅବତାରେ (୧)
୧୯ ବୋଲଇ (୧)
୨୦ ଅବତାରେ (୧)

କପିଳ ଋଷି ତପସ୍ୟାରେ ରହିଲେ
ମାତା ପିତାଙ୍କୁ ଯେ ଜ୍ଞାନ ଚକ୍ଷୁ ଦେଲେ } [୧] । ୩୬୯ ।
ଷଷ୍ଠ ଗର୍ଭେ[୨] ସ୍ୱର୍ଗେ ଦେବ[୩] ନରହରି
ଅଦିତିର ବଂଶେ ଏହି ଦେହ ଧରି[୪] । ୩୭୦ ।
ଅଶେଷ ଯୋଗ ହରି ସାଧନ[୫] କଲେ
ଦତ୍ତା ହେସୁ ରୂପ ଜଗତରେ ହେଲେ[୬] । ୩୭୧ ।
ଅଷ୍ଟମରେ ନାଭି[୭] ଦେହବନ୍ତ ହୋଇ
ଋଷଭ ଦେବ ମନୁ ସୁତ[୮] ବୋଲାଇ । ୩୭୨ ।
ମହାଘୋର କଷ୍ଟେ ତପ ସାଧିକରି
ଜ୍ଞାନୀ-ମାନଙ୍କୁ ସେ[୯] ଦେଖାଇଲେ ହରି । ୩୭୩ ।
ନବମରେ ପୃଥୁ ରୂପେ ଦେହବନ୍ତ
ବଳେ ବସୁନ୍ଧରା ଦୋହନ ଶ୍ରୀହସ୍ତ[୧୦] । ୩୭୪ ।
କ୍ଷୀରରେ ଧରଣୀ କରଣ ସମ୍ପୂର୍ଣ୍ଣ
ନାମ ଯେ ବହିଲେ ପୁରୁଷ-ଉତ୍ତମ[୧୧] । ୩୭୫ ।
ଦଶମେ ମଚ୍ଛ[୧୨] ରୂପେ ଜଳେ ଧଇଲେ
ନାବରେ ବୀଜ ସଂସାରେ ପ୍ରକାଶିଲେ[୧୩] । ୩୭୬ ।
ପ୍ରଳୟ ଜଳରେ ସୁଖରେ[୧୪] ବିହରି
ରବିର କୁମର[୧୫] ଦୁସ୍ତରୁ ଉଦ୍ଧରି । ୩୭୭ ।
ଅତି ଘୋର ବଡ଼ କଷ୍ଟୁ[୧୬] ରକ୍ଷାକଲେ
ଦେବ ନରଲୋକେ ମହିମା ରଖିଲେ । ୩୭୮ ।

---

୧ (୧) ରେ ଧାଡ଼ି ଉପର ତଳ ହୋଇଛି
୧ ସପ୍ତମ ସ୍ୱର୍ଗେ (୨)
୩ ହୋଇଲେ (୨)
୪ ଅଦିତି ଗର୍ଭେ ହୋଇଲେ ଗର୍ଭବାସୀ (୧)
୫ ସାଧନା ହରି (୧)
୬ କୃଷ୍ଣ ଜଗତେ ହୋଇଲେ (୧)
୭ ନାଭି ନୃପ ଗୃହେ (୧)
୮ ଋଷଭରେ ସତ ଦେବ ସେ (୨)
୯ ଜ୍ଞାନ ପଥ ତାକୁ (୧)
୧୦ କି ସତ୍ର (୨)
୧୧ ଶ୍ରୀ ପୁରୁଷୋତ୍ତମ (୧)
୧୨ ମତ୍ସ୍ୟ (୧)
୧୩ ନାବ ଔଷଧିକି ଶୃଙ୍ଗରେ ବାନ୍ଧିଲେ (୧)
୧୪ ଶୁଭକ୍ଷଣ (୨)
୧୫ ରବି କୁମରକୁ (୧)
୧୬ ବଡ଼ ଘୋର ତପ (୨)

ଏକାଦଶେ ନାମ ଦେବ[୧] ଚକ୍ରଧର
ଦୈତ୍ୟକୁଳ ନାଶି[୨] କଲେ ଉପକାର ।୩୭୯।
ଇନ୍ଦ୍ର ଅର୍ଥେ ସର୍ବେ ଦେବାସୁର ହୋଇ
ସମୁଦ୍ର ମନ୍ଥନ କଲେ[୩] ସର୍ବେ ଯାଇ ।୩୮୦।
କଷ୍ଟଚରେ କୂର୍ମ ରୂପେ ବହରିଲ[୪]
ମନ୍ଦର ଗିରି ପୃଷ୍ଠରେ ସେ[୫] ବହିଲ[୬] ।୩୮୧।
ଜଳାଧି ମନ୍ଥିଲ[୭] କୂର୍ମ ରୂପ ଧରି
ଚତୁର୍ଦ୍ଦଶ ଦ୍ରବ୍ୟ[୮] ଔଷଧ ବସ୍ତାରି[୯] ।୩୮୨।
ଦ୍ୱାଦଶ ସ୍ୱର୍ଗରେ ହୋଇ ବଶୁ[୧୦] କଲେ
ଜନ୍ମ ଯେ ଲଭିଲେ[୧୧] ଧନ୍ୱନ୍ତରୀ ରୂପେ ।୩୮୩।
ମହା ମୋହିନୀ[୧୨] ରୂପ ହୋଇ ନିଦଶେ
ଶିବ[୧୩] ଦେହ ବ୍ୟାପି[୧୪] କାମକୁ ପ୍ରକାଶେ ।୩୮୪।
ବାମନ[୧୫] ରୂପ ହୋଇଲେ[୧୬] ଚତୁର୍ଦ୍ଦଶେ[୧୭]
ବଳକ ଯୁପିଲେ ଏ ଘୋର ବଶୁାସେ[୧୮] ।୩୮୫।
ଷୋଡ଼ସ ଅକଟାରେ ଯେ ନରହରି
ପ୍ରସୁରାମ ରୂପେ କ୍ଷେତ୍ରୀପୁ ସଂହାରି [୨୦] ।୩୮୬।
ମାତାର[୧୯] ବଧରେ ଅଷ୍ଟ ଅହଂକାରେ
ଅଗ୍ନି ରୂପେ ଭ୍ରମି ମହା କୋପାନଳେ [୨୦] ।୩୮୭।

---

୧ ଦେହ ଧରି (୧)
୨ ଯେ ରୂପେ ଦେବଙ୍କୁ (୧)
୩ କ୍ଷିର ସମୁଦ୍ର ମନ୍ଥିଲେ (୧)
୪ କପଟେ କୂର୍ମ ରୂପରେ ବହରିଲେ (୧)
୫ ଯେ ପୃଷ୍ଠରେ (୧)
୬ ଧଇଲେ (୧)
୭ ଯଳାଧି ମନ୍ଥିଲେ (୧)
୮ ଦ୍ରବ୍ୟ (୨)
୯ ବସ୍ତରି (୨)
୧୦ ବଶୁ ରୂପ (୧)
୧୧ ହୋଇ ଲଭି (୨)
୧୨ ମହିମା (୧)
୧୩ ସଦାଶିବ (୧)
୧୪ ଦେହେ (୧) ବ୍ୟାପି ନାହିଁ ।
୧୫ ଶ୍ରୀ ବାମନ (୧)
୧୬ ହୋଇ (୧)
୧୭ ଚତୁର୍ଦ୍ଦସେ (୨)
୧୮ ଅଷ୍ଟ ବରେ ଅସେ (୨)
୧୯ ପିତାର (୨)
୨୦ ପଦ ୩୮୬, ୩୮୭ କେବଳ (୨) ଯୁ ପୋଥିରେ ଅଛି ।

ଧରଣୀ ପ୍ରସନ୍ନ ଏକ ବିଂଶବାରେ[୧]
ରାଜପୁତ୍ର ମାନ ଧରି ବାହୁବଳେ । ୩୮୮ ।
ଦୁଷ୍ଟ କ୍ଷତ୍ରିୟ ମାନଙ୍କ କାଟି ମୁଣ୍ଡ
ରୁଧିର କଲେ ଯେ ପ୍ରଭୁ[୨] ସପ୍ତକୁଣ୍ଡ । ୩୮୯ ।
ତର୍ପଣ କଲେକ[୩] ଯାଇ ପିତୃଗଣେ
ତପରେ ରହିଲେ[୪] ପ୍ରଭୁ ଘୋର ବନେ । ୩୯୦ ।
ସପ୍ତଦଶେ ହରି ସୁରଙ୍କର କାର୍ଯ୍ୟେ
ଜନ୍ମ ଯେ ଲଭିଲେ[୫] ପରାଶର ବୀର୍ଯ୍ୟେ । ୩୯୧ ।
ନିଗମ[୬] ବୃକ୍ଷ ଥିଲା ସ୍ୱର୍ଗରେ ଏକା[୭]
ବିସ୍ତରଣ[୮] କଲେ ତାକୁ ଶତେ ଶାଖା[୯] । ୩୯୨ ।
ପ୍ରାଣି ମାନଙ୍କର ଦେଖି ଅଳ୍ପ ବୁଦ୍ଧି
ଧର୍ମ ବିସ୍ତାର[୧୦] କରି ସଂସାରେ ସିଦ୍ଧି[୧୧] । ୩୯୩ ।
ଜନ୍ମିଲେ ବସ୍ତୁ ଯେ[୧୨] ଦିବାକର ଅଂଶେ[୧୩]
ଶ୍ରୀରାମ ରୂପରେ ଜାତ[୧୪] ରଘୁ ବଂଶେ । ୩୯୪ ।
ଜଳଧି ବାନ୍ଧିଲେ ସୀତାଙ୍କର[୧୫] ଛଳେ
ଲଙ୍କା ବିଧ୍ୱଂସିଲେ ନିଜ ବାହୁବଳେ । ୩୯୫ ।
ରାବଣ ମାରଣ[୧୬] କଲେ ଦେବ କାର୍ଯ୍ୟ
ଭକ୍ତ ରଖି[୧୭] ବିଭୀଷଣ ଦେଇ ରାଜ୍ୟ[୧୮] । ୩୯୬ ।

---

୧ ଜମଦଗ୍ନି ଛଳେ ମହା ବେତାଳକେ (୧)
୨ ରେ ପ୍ରଭୁ କଲେ (୧)
୩ ତୋଷିଲେ (୧)
୪ ରହିଲ (୨)
୫ ହୋଇଲେ (୨)
୬ ନିଗମଯେ ଗମ (୧)
୭ ବୃକ୍ଷ ଥିଲାକେ (୧)
୮ ବିସ୍ତରଣ ବ୍ୟାସେ (୧)
୯ ତପ୍ତ ଶାଖା (୧)
୧୦ ଧର୍ମାଚାର (୧)
୧୧ ପ୍ରସିଦ୍ଧି (୧)
୧୨ ଜନ୍ମ ଲଭି କୃଷ୍ଣ (୧)
୧୩ ବଂଶେ (୨)
୧୪ ହୋଇ (୨)
୧୫ ଦେବୀ (୧)
୧୬ ବ ମାର (୧)
୧୭ (୧) ରେ ନାହିଁ
୧୮ ରଖି ଦେବରାଜ (୧)

ଓ୍ୱନ ବଂଶରେ ସେ[୧] ଦେବ ନରହରି
ଦେବଙ୍କ ହିତରେ ନର କାୟା ଧରି[୨] । ୩୯୭ ।
ଶ୍ରୀକୃଷ୍ଣ ରୂପରେ[୩] ହଳଧର[୪] ଭୂଲେ
ଅବନୀର ଭରା ଭର[୫] ଉଶ୍ୱାସିଲେ[୬] । ୩୯୮ ।
ସବୁକୁ ନିକୃଷ୍ଟ ଭକ୍ତ ଜନ ବନ୍ଧୁ
ଆରତତ୍ରାଣ[୭] କରୁଣାମୟ ସିନ୍ଧୁ । ୩୯୯ ।
ଭଞ୍ଜି ଗୋବର୍ଦ୍ଧନକୁ ବାରେକ ଉଦ୍ଧର
ମଣି କୋଠ ଠରୁ ଉଦ୍ଧରଣ ଧର । ୪୦୦ ।
ହେ[୮] ଦୟା ସାଗର କର ବାରେ[୯] ରକ୍ଷା
ଚରଣ ଦ୍ରଶନ[୧୦] କରି ଅଛି ବାଞ୍ଛା । ୪୦୧ ।
ଚରଣ ଦ୍ରଶନ[୧୦] ଯେବେ ନ ପାଇବ[୧୧]
ମାଣି କୋଠଠାରେ ଜୀବନ ହାରିବ[୧୨] । ୪୦୨ ।
ଲଜ୍ଜା ନିବାରଣ ଲଜ୍ଜା ନିବାରିବ
ଚରଣ ଦ୍ରଶନେ[୧୩] ଆରତ ନାଶିବ[୧୪] । ୪୦୩ ।
ଅନାଦି ପୁରୁଷ ଆଦି ଅନ୍ତ ନାହିଁ
ଅବନୀରେ ଜାତ କ୍ଷିତି ଭରା ପାଇଁ । ୪୦୪ ।
ମଥୁରାରେ ଜାତ[୧୫] ବସୁଦେବ ଘରେ
ଗୋପରେ ବଢ଼ିଲେ[୧୬] କଂସରାଜା ଡ଼ରେ । ୪୦୫ ।
ପୂତନା ବକା[୧୭] ଶକଟା ଅର୍ଦ୍ଧାସୁର
ପ୍ରଲମ୍ବା ଧେନୁକା କେଶୀ[୧୮] ମହାବୀର । ୪୦୬ ।

---

୧ ବଂଶତରେ (୨)
୨ ଯାଦବ ରୂପରେ କୃଷ୍ଣ ଅବତାର (୨)
୩ ସଙ୍ଗରେ (୨)
୪ ବଳରାମ (୨)
୫ ଅବନୀ ଭାର ଭର (୧)
୬ ଉଶ୍ୱାସ କଲେ (୧)
୭ ଆରତ ନାଶନ (୨)
୮ (୧) ରେ ନାହିଁ
୯ ହରି ବରିବା (୧)
୧୦ ଦର୍ଶନ (୧)
୧୧ ପାଇବ (୨)
୧୨ ଛାଡ଼ିବ (୧)
୧୩ ଦର୍ଶନେ (୧)
୧୪ ଅଛି ନାଶ ଚିନ୍ତ (୧)
୧୫ ଜନ୍ମିଲେ (୧)
୧୬ ରହିଲେ (୧)
୧୭ ବଛ (୨)
୧୮ ଯେତେ (୧)

ଶଙ୍ଖ-ଚୂଡ଼ ମଣି-ଚୂଡ଼[୧] ସୁର ଆଦି
ହେଲେ ନାସିଲ[୨] ଅମର ଗୁରୁବାଦୀ ।୪୦୭।
କୁବେର ସୁତଙ୍କୁ[୩] ଶାପରୁ ମୁକତ
ଗିରି ଟେକି ସୁରପତି[୪] ଦର୍ପ[୫] ହତ ।୪୦୮।

ଶିଶୁ ବତ୍ସା[୬] ହରି ହାରିଲେକ[୭] ବ୍ରହ୍ମା
କାଳିକ ଦଳ ବକାଶିଲ[୮] ମହିମା ।୪୦୯।

ଭାବକୁ ନକଠ[୯] ହେ କରୁଣା ରାଶି[୧୦]
ରସିଲେ[୧୧] ଗୋପୀଙ୍କି ଭାବରେ ସନ୍ତୋଷୀ[୧୨] ।୪୧୦।

କୁବଳୟା[୧୩] ଅଷ୍ଟ ମାଲଙ୍କର ମୂଳେ
ହେଲେ ମାଇଲ[୧୪] ଅସୁର ଯେତେ ଥିଲେ ।୪୧୧।

ଅସୁର ନାଶି ରଖିଲ[୧୫] ଯଦୁ ବଂଶ
ଚରଣ ଦ୍ରଶନେ[୧୬] ମଲ୍ଲ ରଜା କଂସ ।୪୧୨।

ଜାର ସୁତ କାଳେ ହାରିଲ[୧୭] ଯେ ପ୍ରଭୁ
ଅଷ୍ଟାଦଶ[୧୮] ବେଳେ[୧୯] ମାଇଲ[୨୦] ହେ ସବୁ ।୪୧୩।

କପଟେ ନାଶିଲ[୨୧] ଦବନାଦ୍ଧ[୨୨] କରି
ସମୋଦ୍ର ମଧ୍ୟରେ ଗୃହ କଲ[୨୩] ହରି ।୪୧୪।

---

୧ ଚୂଡ଼ା (୧)
୨ ମାଇଲେ (୧)
୩ ପୁତ୍ର (୧)
୪ ଇନ୍ଦ୍ର (୧)
୫ ଗର୍ବକଣ୍ଟ (୧)
୬ ବଚ୍ଛା (୨)
୭ ଦ୍ରୋହକଲ୍ (୨)
୮ ଝଙ୍କାଶିଲେ (୧)
୯ ବଣ (୧)
୧୦ ସମୁଦ୍ର (୧)
୧୧ ରମିଲେ (୧)
୧୨ ମୋହନ ରୂପଧର (୧)
୧୩ କୁବଳୟାପିଡ (୨)
୧୪ ମାରିଲେ (୨)
୧୫ ରଖିଲେ (୧)
୧୬ ଦର୍ଶନେ (୧)
୧୭ ରଜା ଦୈତ୍ୟ ଯୁଦ୍ଧ ହାରିଲେ (୧)
୧୮ ଅଠର (୨)
୧୯ ବେଳ (୨)
୨୦ ମାରିଲେ (୧)
୨୧ ନାଶିଲେ (୧)
୨୨ ଦମ ନାଦ୍ଧି (୨)
୨୩ କଲେ (୧)

କୃଷ୍ଣ ସିନ୍ଧୁସ୍ଥଳୀ[1] ଭିତର ପାରୁଶେ[2]
ଦ୍ୱାରାବତୀ ନାମେ ନଗ୍ର ଯେ ପ୍ରକାଶେ[3] ।୪୧୫।
ଷୋଳ ସହସ୍ର ଯେ[4] ରାଣୀଙ୍କର ଜେମା
ଅଷ୍ଟପାଟବଂଶୀ[5] ଶ୍ରେଷ୍ଠ ରାଜନେମା[6] ।୪୧୬।
ଗୋପପୁରେ[7] ଯେତେ କୃତ୍ୟ ହରି[8] କଲେ
ଦେବେ ଦୁର୍ଲ୍ଲଭ ମହିମା[9] ପ୍ରକାଶିଲେ ।୪୧୭।
ଅତି ଅଦଭୁତ ମହିମା ଯାହାର
ଭଞ୍ଜି ଗୋବିନ୍ଦଙ୍କ ବାରେ[10] ରକ୍ଷାକର ।୪୧୮।
ଭଞ୍ଜି ଗୋବିନ୍ଦ ପାଦପଦ୍ମେ କିଙ୍କର
ଏଣୁ ତୁମ୍ଭ[11] ନାମ ଶରଣ ସୋଦର ।୪୧୯।
ତ୍ରିପତି ଲୋଚନ ପୁଣ ତୁମ୍ଭ[12] ଭୃତ୍ୟ
ଦୀନ ଜନବନ୍ଧୁ ମହିମା ଅଭୁତ ।୪୨୦।
ତ୍ରୈଲୋକ୍ୟର ନାଥ ଜଗତ[13] ସୋଦର
ଦୀନବନ୍ଧୁ ବୋଲି ଭରସା ମୋହର ।୪୨୧।
ଦୁଃଖିଜନ[14] ବୋଲି ଡାକୁଛି ଗୋସାଇଁ
ଅଶେଷ ଲୋକନାଥ ତୁମ୍ଭେ ବୋଲାଇ[15] ।୪୨୨।
କଳିଯୁଗ ଆଦ୍ୟେ ପ୍ରଭୁ ଭାବଗ୍ରାହୀ
ପାଷଣ୍ଡମାନଙ୍କ ମନକୁ ନେଯ ମୋହି[16] ।୪୨୩।
ବଉଦ୍ଧ ରୂପରେ[17] ଦ୍ୱିଜ ଘରେ ଜନ୍ମ
ଶ୍ରୀକଟ[18] ନଗରେ ପ୍ରଭୁ ଉତପନ୍ନ[19] ।୪୨୪।

---

୧ ସ୍ଥଳୀ ସିନ୍ଧୁ (୧)
୨ ଉପାମ (୧)
୩ ନଗ୍ର ଯେ ରଚିଲେ ଦ୍ୱାରାବତୀ ନାମେ (୧)
୪ ଯେ ଗ୍ରହସ୍ର (୧)
୫ ଶ୍ରେଷ୍ଠ (୧)
୬ କ ଅମ୍ବିକା (୧)
୭ ଗୋପପୁରେ ରହି (୧)
୮ (୧) ରେ ନାହିଁ
୯ ନିଯୁକେ (୧)
୧୦ କୁ ପ୍ରଭୁ (୧)
୧୧ ଟେଣୁ କଣ (୨)
୧୨ ତ୍ରିଲୋଚନ ଦେବ ଭୃତ୍ୟଙ୍କର (୧)
୧୩ ଶରଣ (୧)
୧୪ ଦୀନ ବନ୍ଧୁ (୧)
୧୫ ତୁ ଶୁଣିଲଇଁ (୨)
୧୬ ପାଷଣ୍ଡ ଜନମନ ମୋହିବା ପାଇଁ (୧)
୧୭ ବୌଦ୍ଧ ରୂପେ ହରି (୧)
୧୮ ପ୍ରକଟ (୨)
୧୯ ହୋଇ ଅବତର୍ଣ୍ଣ (୨)

ଜ୍ଞାନ ଉପଦେଶ ଦେଇ ଭଗବାନ
କ୍ଷଣମାତ୍ରେ ମୋହି[୧] ଅସୁରଙ୍କ ମନ । ୪୨୫ ।
ଏକ[୨] ବଂଶବାର[୩] ଅବତାର ହୋଇ
ସୁଜନ ଜନଙ୍କୁ ରଖିବାର ପାଇଁ । ୪୨୬ ।
କଳିଯୁଗ ଅନ୍ତେ ପ୍ରଭୁ[୪] ଚକ୍ରଧର
ରାଜା ଏ ପ୍ରଜାଙ୍କୁ[୫] ଦଣ୍ଡିବେ ଅପାର । ୪୨୭ ।
ତେବେ ହେଁ ଜନ୍ମିବେ[୬] ବିଷ୍ଣୁ ଦାସ ଘରେ
ଅବତୀର୍ଣ୍ଣ ହେବେ[୭] କଳକି ରୂପରେ । ୪୨୮ ।
ମନରୁଁ ବେଗବନ୍ତ[୮] ହୋଇ ଶ୍ରୀହରି[୯]
ଅଶ୍ୱ ଆରୋହଣ[୧୦] ତୀକ୍ଷ୍ଣ ଅସ୍ତ୍ର ଧରି । ୪୨୯ ।
ପ୍ରଚଣ୍ଡ ରୂପରେ ବେଗବନ୍ତ[୧୧] ହୋଇ
ସପତ ଦିନେ ମହିମା[୧୨] ପ୍ରକାଶଇ । ୪୩୦ ।
ଅତ୍ୟନ୍ତ ବିସ୍ତୀର୍ଣ୍ଣ[୧୩] ଖଡ୍‌ଗ କରେ ଧରି
ଦୁଷ୍ଟ ରାଜାଙ୍କର[୧୪] ଦର୍ପ ବେଗେ[୧୫] ହରି । ୪୩୧ ।
ଅଳପ ଜନ ରଖିବେ ଅବଶେଷ[୧୬]
ଦୟାବନ୍ତ ରୂପେ[୧୭] କରିବେ ପ୍ରକାଶ । ୪୩୨ ।
ସତ୍ୟ ନିଧି ହରି ପ୍ରଭୁ ଚକ୍ରଧର
ଅସଂଖ୍ୟ ଗୁଣ ହରିର ଅବତାର[୧୮] । ୪୩୩ ।
ଜୀମୂତ ଯେସନେ ଜଳ ବରଷନ୍ତି[୧୯]
ସମସ୍ତ ନଦୀ ସମୁଦ୍ରରେ ମିଶନ୍ତି[୨୦] । ୪୩୪ ।

---

୧ କ୍ଷଣକେ ମୋହିଲ (୧)
୨ ରୂପେ ଏକ (୧)
୩ (୧) ରେ 'ବାର' ନାହିଁ ।
୪ ଦେବ (୨)
୫ ରାଜା ପ୍ରଜାଙ୍କୁ ପେ (୧)
୬ ଜନ୍ମ ହେବେ ପ୍ରଭୁ (୧)
୭ ଅବତାର କରିବେ (୧)
୮ ବ୍ୟଗ୍ର (୧)
୯ ହୋଇଣ ହରି (୨)
୧୦ ଅଶ୍ୱରୁ ଆରୋହି (୧)
୧୧ ସ୍ୱରୂପେ ଶ୍ରମ ବ୍ୟଗ୍ର (୧)
୧୨ ସପ୍ତଦିନେ ପ୍ରଭୁ ତେଜ (୧)
୧୩ ବିସ୍ତାର (୧)
୧୪ ଦାନବ ମାନଙ୍କ (୧)
୧୫ (୧) ରେ 'ବେଗେ' ନାହିଁ ।
୧୬ ଅଲ୍ପାତ୍ମକ ଜନ ନରଖିବେ ଶେଷ(୧)
୧୭ ରୁଦ୍ର (୧)
୧୮ ଅତ୍ୟନ୍ତ ଅସଂଖ୍ୟ ଗୁଣ ଅଗୋଚର(୧)
୧୯ ବୃଷ୍ଟି ହୋଇ (୨)
୨୦ ମିଶଇ (୨)

ଋଷି ଦେବତା ମନୁ ଆଦ ସହିତ[1]
ଯେଉଁ ମନୁଠାରୁ ପ୍ରକାଶ ଜଗତ[2] । ୪୩୫ ।
ଏ ରୂପେ ଋଷି ଆଦ୍ୟ ଯେ[3] ପ୍ରଜାପତି
ବସ୍ତୁଠାରୁ ସୃଷ୍ଟି[4] ପ୍ରକାଶ ହୁଅନ୍ତି । ୪୩୬ ।
ସକଳ ଅବତାରଙ୍କ ମଧ୍ୟେ[5] ସାର
କୃଷ୍ଣ ରୂପେ ପ୍ରଭୁ ଗୋପେ[6] ଅବତାର । ୪୩୭ ।
ଭଞ୍ଜି ଗୋବର୍ଦ୍ଧନକୁ ପ୍ରଭୁ ରକ୍ଷାକର
ଭକତ ବତ୍ସଳ ଯେ ଦୟା ସାଗର । ୪୩୮ ।
କଳି ଯୁଗରେ ମନୁଷ୍ୟ ଅବତାର[7]
କ ଗୋଚର ମୋତେ[8] ମହିମା ତୁମ୍ଭର । ୪୩୯ ।
ଦେବଙ୍କୁ ଦୁର୍ଲ୍ଲଭ ଜଗତ ଭିତର[9]
ଶ୍ରୀ କୃଷ୍ଣ ରୂପରେ ଦେବ ଚକ୍ରଧର[10] । ୪୪୦ ।
ନାରାୟଣ[11] ରୂପେ ହୋଇ ଅବତାର
ସଂସାରରେ[12] ହର କରନ୍ତି ବହାର[13] । ୪୪୧ ।
ଦୁଷ୍ଟ ଜନଙ୍କର ନଜତେଜ[14] ହରି
ସଂସାର ରଖନ୍ତି ଦେବ ଦଇତାରି । ୪୪୨ ।
ଜଗତ ପ୍ରଭୁଙ୍କ[15] ଅନନ୍ତ ମହିମା
ବ୍ରହ୍ମା ଶିବ ଇନ୍ଦ୍ର[16] ନ ପାଇଲେ ସୀମା । ୪୪୩ ।
ମୁଁ[17] ଘୋର ପାମର ହୀନ କ[18] କହିବ
ଶିଶୁ ବେଦ ସୀମା କେମନ୍ତେ[19] ଜାଣିବ । ୪୪୪ ।

---

୧ ଋଷି ଆଦ ଦେବ ମନୁଷ୍ୟ ସହିତ (୧)
୨ ଯେଉଁ ମୂଳ ତାରୁ ସବୁସି ଯଗତେ (୨)
୩ ଥାଇ (୧)
୪ କୃଷ୍ଣ ଅଂଶ ଯୁକ୍ତେ (୧)
୫ ସର୍ବ ଅବତର ସଂସାରରେ (୧)
୬ ଗୋପପୁରେ (୨)
୭ ମୁଁ ମନୁଷ୍ୟ ମାତର (୨)
୮ କ ଅବା ଗୋପରେ (୧)
୯ ଭିତରେ (୨)
୧୦ ଚକ୍ରଧରେ (୨)
୧୧ ପ୍ରେମରେ (୨)
୧୨ ସଂସାରେ (୨)
୧୩ ବେଭହାର (୨)
୧୪ ଦୁଷ୍ଟ ମାନଙ୍କର କେତେ ଦର୍ପ (୧)
୧୫ ଜଗତରେ ତୁମ୍ଭ (୧)
୧୬ ଇନ୍ଦ୍ର ଶିବ (୧)
୧୭ ମୋ (୧)
୧୮ କ ଅବା (୧)
୧୯ ମନୁଖ ମାନଙ୍କ କ ଅବା (୨)

ଦେବ ନବ ସାସ୍ତ୍ର ଦେବଙ୍କର ହିତ
ଯାହାଠାରୁ ଜନ୍ମ ଜଗତେ ଭଗତ[୧] । ୪୪୫ ।
ଭଗତ ବତ୍ସଳ ଦେବ ଦଇତାରି
ଭଞ୍ଜି ଗୋବର୍ଦ୍ଧନ ବେଗେ କରିପାରି[୧] । ୪୪୬ ।
ଏ ମର୍ତ୍ତ୍ୟ ମଣ୍ଡଳେ ଦେହ ଧରି କରି[୨]
ମରଣ ଘୁରକୁ କସ ପାଇଁ ଡ଼ରି । ୪୪୭ ।
ସଂସାର ସାଗରେ[୩] ଜନ୍ମ ମନୁଷ୍ୟେଣ
ମାଣିଠାରେ[୪] ମୃତ୍ୟୁ ହେବ ଅକାରଣ । ୪୪୮ ।
ମହା ଭୟ ଚିତ୍ତେ[୫] ଡ଼ାକୁଛି ତୁମ୍ଭଙ୍କୁ
ମାଣିଠାରେ ଡ଼ରେ[୬] ଜୀବନ ଯିବାକୁ । ୪୪୯ ।
ମରଣଠାରୁ ତ ଲାଜସେ ବଳବ[୭]
ଏହି ଭୟ ସଂସାରରେ ଅସମ୍ଭବ । ୪୫୦ ।
ମାତା ପିତା ଯାର[୮] ଜଗତ[୯] ସୋଦର
ମୁଁ ଯେ ଶରଣ ଶ୍ରୀ ଚରଣେ ତୁମ୍ଭର[୧୦] । ୪୫୧ ।
ଜଗବନ୍ଧୁ ଯେବେ ନିର୍ଘଣ କରିବେ[୧୧]
ଫଳାଫଳ କର୍ମ ଆଜ୍ଞା ଯେବେ ଦେବେ[୧୨] । ୪୫୨ ।
ଜଗବନ୍ଧୁ ଯାର[୧୩] ରକ୍ଷ ପାଳ ହୋଇ
କର୍ମ[୧୪] ଫଳାଫଳ ତାର[୧୫] ଆଜ କାହିଁ । ୪୫୩ ।
ଏବେ ଶ୍ରୀହରି ମୁଁ କି ବୁଦ୍ଧି କରିବ
ମଣି କୋଠଠାରୁ କେମନ୍ତେ[୧୬] ତରିବ । ୪୫୪ ।

---

୧ ପଦ ୪୦୬, ୪୦୭ କେବଳ (୨) ପୋଥିରେ
୨ ମର୍ତ୍ତ୍ୟ ମଣ୍ଡଳରେ ମୃତ୍ୟୁ ଦେହ ଧରି (୧)
୩ ଭିତରେ (୨)
୪ ମଣି (୧)
୫ ଘୋର ଅତି (୧)
୬ କୋଠ ଠାରେ (୧)
୭ ଲଜ୍ଜା ବଡ଼ ହୋଇବ (୧)
୮ ଯାହା (୧)
୯ ଜଗତେ (୨)
୧୦ ଭଜେ ଶ୍ରୀ ଚରଣ ଚିନ୍ତ ହୃଦୟର (୧)
୧୧ କରିବ (୧)
୧୨ କର୍ମ ଫଳାଫଳ ବୋଲି ଅଜ୍ଞ ଦେବ (୧)
୧୩ ଜଗତ ସୋଦର (୧)
୧୪ ଜନ୍ମ କର୍ମ (୧)
୧୫ (୧)ରେ ନାହିଁ
୧୬ ମାଣି ଠାରୁ ହଟି କି ରୂପେ (୨)

ଜୀବ[୧] ରୂପେ ସର୍ବ ଘଟେ ପୂରିଅଛ[୨]
ମହିମା କହିବ କେ ଅବା ପ୍ରତ୍ୟକ୍ଷ[୩] ।୪୫୫।
ଆଶା ରୂପୀ ହୋଇ[୪] ଜୀବକୁ ନାଶିବ
ହତ୍ୟା ହେଲା[୫] ଦୋଷ କାହାକୁ[୬] ଲାଗିବ ।୪୫୬।
ଭଞ୍ଜ ଗୋବର୍ଦ୍ଧ ସେ ଚରଣେ[୭] କଙ୍କର
ଶରଣ ସୋଦର ବାରେ[୮] ରକ୍ଷା କର ।୪୫୭।

ଭକତ ଜନଙ୍କ ଅଳି[୯] ଯେବେ ହୋଇ
କୃପା-ସିନ୍ଧୁ ରକ୍ଷା[୧୦] କର ବେଗେ ଯାଇ ।୪୫୮।
ଭଗତ ବତ୍ସଳ[୧୧] କମଳା ବିଳାସ[୧୨]
ଆଜ୍ଞା ମୋତେ ହେଉ ପୂରୁ ମୋର[୧୩] ଆଶ ।୪୫୯।

ଏ ଘୋର ସଙ୍କଟୁ ବାରେ ରକ୍ଷାକର :
ଆତଙ୍କ ନାଶନ ଜଗତେ ବିସ୍ତାର ।୪୬୦।

ଏ ଘୋର ସଂସାର ମାୟାର ଭଣ୍ଡାର
ମରିବାକୁ[୧୪] ଭୟ ନାହିଁ ମୋ ମନର[୧୫] ।୪୬୧।

ଶ୍ରୀ ଚରଣ ତଳେ[୧୬] ଶରଣ ପଶିଲି
ପାଷାଣେ[୧୭] ଘରକୁ ବହୁତ ଡ଼ରିଲି ।୪୬୨।

ଯେଉଁ ଶ୍ରୀ ଚରଣେ[୧୮] ଅଷ୍ଟାଦଶ ଚିହ୍ନ
ସେହି ଚରଣେ ମୁଁ ପଶିଲି[୧୯] ଶରଣ ।୪୬୩।

---

୧ ଜୀବନ (୨)
୨ ପୂରିଛ (୨)
୩ କହିଲେ ହେବ ସମକ୍ଷ (୧)
୪ ହେଲୁ (୧)
୫ ହେଲେ (୧)
୬ ଚରଣେ (୨)
୭ ପାଦ ପଦ୍ମେ (୧)
୮ ପ୍ରଭୁ (୧)
୯ ଜନ ଆତଙ୍କ (୧)
୧୦ କୃପା (୨)
୧୧ ବତ୍ସଳ (୨)
୧୨ ଜଗତେ ପ୍ରକାଶ (୧)
୧୩ ବେଗେ (୨)
୧୪ ପାଇଁ (୨)
୧୫ ମୋହର (୨)
୧୬ ଶ୍ରୀ ପଦ୍ମ ଚରଣେ (୧)
୧୭ ପଥର (୨)
୧୮ ଚରଣରେ (୨)
୧୯ ସେ ହରି ଚରଣେ ମୁଁ ପଶିବି (୨)

ଯେଉଁ ଶ୍ରୀଭୁଜେ[1] ଶଙ୍ଖ ଚକ୍ର ଶୋହଇ[2]
ସେହି ଶ୍ରୀଭୁଜରେ[3] ଶରଣ ମାଗଇ । ୪୬୪ ।
ଗଦା ପଦ୍ମ ସୁଦର୍ଶନ ଯହିଁ[4] ଶୋଭା
ଶ୍ରୀବତ୍ସ ଚିହ୍ନ ହୃଦରେ ଦିବ୍ୟ ଆଭା । ୪୬୫ ।
ଶ୍ରୀ ଭୁଜକୁ ଆଶ୍ରେ[5] ବ୍ରହ୍ମା ଆଦି ଦେବେ
ଭକ୍ତ ଗୋବିନ୍ଦ କ ରକ୍ଷା ସେ[6] କରିବେ । ୪୬୬ ।
ରଖିଲେ ରଖିବେ ଜଗତର ବନ୍ଧୁ
ବାନା ଉଡେ ପ୍ରଭୁ ଧୀନ ଜନ ବନ୍ଧୁ[7] । ୪୬୭ ।
ନାମ ଯେ ବହିଛ ଜଗତ ସୋଦର
ମାଣିର ଭକତରୁ ଉଦ୍ଧାରଣ ଧର । ୪୬୮ ।
ଗଜ ବିପ୍ର ମୃଗ[8] ଡ଼ାକିଲେ ଆତଙ୍କେ
ବୈକୁଣ୍ଠରେ[9] ଥାଇ ଲକ୍ଷ୍ମୀ ଦେବୀ ସଙ୍ଗେ । ୪୬୯ ।
ଡ଼ାକିଲା ମାତ୍ରକେ ବେଗେ ହେଁ[10] ଶୁଣିଲ
ଆତଙ୍କ ନାଶିଣ ଉଦ୍ଧରି ଧଇଲ । ୪୭୦ ।
ଶ୍ରୀ ଚରଣେ ଧ୍ୱଜ ଅଙ୍କୁଶ ବସିଛେ
ଶଙ୍ଖ ଚକ୍ର ପଦ୍ମ[11] ରବି ତେଜ ଗଞ୍ଜେ । ୪୭୧ ।
ଆତଙ୍କ ନାଶନ ବାନା ଯେ ତୁମ୍ଭର
ଭକ୍ତ ଗୋବିନ୍ଦ କ[12] ପ୍ରଭୁ ରକ୍ଷାକର । ୪୭୨ ।
ଜୀବର ଜୀବନ ହରି ମୋ ଈଶ୍ୱର
ମାତା ପିତା ବନ୍ଧୁ ଶଙ୍ଖ ଚକ୍ର ଧର । ୪୭୩ ।
ସ୍ତୁତ ସାରିଣ ଯେ[13] ଶରଣ ପଶିଲା
ଶ୍ରୀ ପଦ୍ମ ଚରଣେ ଚିତ୍ତ ସମର୍ପିଲା । ୪୭୪ ।

---

୧ ଶ୍ରୀ ଭୁଜରେ (୨)
୨ ସୋଭା ପାଇ (୨)
୩ ଭୁଜକୁ (୧)
୪ ଅଧି (୨)
୫ ଶ୍ରୀ ଭୁଜ ଅଶ୍ରୟ (୨)
୬ ଗୋବିନ୍ଦ ହରି ରକ୍ଷା (୧)
୭ ଯା ନାମେ ଡରେ ଶୋଷଣୀ ପ୍ରାଣ ବନ୍ଧୁ (୧)
୮ ମୃଗ ବିପ୍ର (୨)
୯ ବଇକୁଣ୍ଠେ (୨)
୧୦ ମାତ୍ରେ ହରି ବେଗେ (୧)
୧୧ ଗଦା (୧)
୧୨ ଗୋବିନ୍ଦକୁ (୧)
୧୩ ସ୍ତୁତିରେ ଗୋବିନ୍ଦ (୧)

ବୈକୁଣ୍ଠର ନାଥ ଜାଣିଲେ ତା ମନ
ଦୟାକର ପ୍ରଭୁ ହୋଇଲେ[୧] ପ୍ରସନ୍ନ । ୪୮୫ ।
ମାଣି କୋଠେ ହରି ଦରଶନ ଦେଲେ[୨]
କୁହୁକ ରାହେ କି ଚନ୍ଦ୍ରମା ଉଇଁଲେ[୩] । ୪୭୬ ।
ଶଙ୍ଖ ଚକ୍ର ଗଦା ଚତୁର୍ଭୁଜ ହୋଇ
ବୋଲନ୍ତି ରାଜାଙ୍କୁ[୪] ବର ମାଗ ତୁହି । ୪୭୭ ।
ଅଣ୍ଡିର[୫] କୋକିଳ ବଚନ ଶୁଣିଣ
ଚକ୍ଷୁ ଫେଡ଼ି ରାଜା ଚାହିଁଲ[୬] ତକ୍ଷଣ । ୪୭୮ ।
ଇନ୍ଦ୍ର ନୀଳମଣି ସ୍ୱରୂପ ଦେଖିଲା
ନମସ୍କରି ଜୋଡ଼ି ଚରଣେ ପଡ଼ିଲା । ୪୭୯ ।
ଆନନ୍ଦେ ଗୋବିନ୍ଦ ସ୍ତୁତି ଆରମ୍ଭିଲ
କଣ୍ଠ କୁଣ୍ଠିତରେ ପ୍ରଲମ୍ବିତ କଲ[୭] । ୪୮୦ ।
ଜୟ ଜୟ ପ୍ରଭୁ ଶରଣ ସୋଦର
ଜୟ ଜୟ ହରି ଶଙ୍ଖ ଚକ୍ର ଧର । ୪୮୧ ।
ଜୟ ଜୟ ପ୍ରଭୁ ଲକ୍ଷ୍ମୀ ନାରାୟଣ[୮]
ଜୟ ଜୟ ପ୍ରଭୁ ରୁକ୍ମଣୀ ରମଣ[୯] । ୪୮୨ ।
ଜୟ ଜୟ ପ୍ରଭୁ[୧୦] ଚାରି ବେଦ ଜ୍ଞାତା[୧୧]
ଜୟ ଜୟ ପ୍ରଭୁ ସୃଷ୍ଟି ଆଦି କର୍ତ୍ତା[୧୨] । ୪୮୩ ।
ଘୋର ଆତଙ୍କୁ ରଖିଲ ପିତା-ମାତା[୧୩]
ଅସୁର ନିବାରି ରଖିଲ[୧୪] ଦେବତା । ୪୮୪ ।

---

୧ ଦୟାନିଧି ଦୟାରେ ହେଲେ (୧)
୨ ମାଣିକାଠଠାରେ ପ୍ରସନ୍ନ ଯେ ହେଲେ (୨)
୩ ଉଆଁସ ଅନ୍ଧାରେ ଚନ୍ଦ୍ର ଉଦେ ହେଲେ (୧)
୪ ପ୍ରସନ୍ନ ହୋଇକ୍ଷ (୧)
୫ ଉଲ୍ଲାଉ (୧)
୬ ବେନି ଚକ୍ଷୁ ଫେରି ଚାହିଁଲେ (୨)
୭ କୁଣ୍ଠିତ ହୋଇଣ ପ୍ରଣମିଲ୍ଲ (୧)
୮ ଜୟ ଜୟ ପ୍ରଭୁ ଆତଙ୍କ ନାଶନ (୧)
୯ (୧)ରେ ନାହିଁ, (୨)ରେ ଅଛି
୧୦ କର୍ତ୍ତା (୧)
୧୧ ହର୍ତ୍ତା (୧)
୧୨ ପିତା (୨)
୧୩ ଘୋର ଦୁସ୍ତରୁ ଉଧର ମାତା ପିତା(୨)
୧୪ ଉଧରି (୨)

ଗଜ ଯେ ଡାକିଲା ଗ୍ରାହ ମୁଖେ[1] ଥାଇ
ତୁମ୍ଭ ପାଦ ପଦ୍ମ ଏକ ମନେ ଧ୍ୟାଇ । ୪୮୫ ।
ଗ୍ରାହକୁ ନିବାରି[2] ଆତଙ୍କ ଖଣ୍ଡିଲ
ଦ୍ରୌପଦୀ ବସନେ କୋଟି ବସ୍ତ୍ର[3] ଦେଲ । ୪୮୬ ।
ଶ୍ରୀଧର ବୋଲନ୍ତି ଶୁଣ ଗୋବିନ୍ଦାଇ[4]
ପୂର୍ବ ଅର୍ଜିଲା ପାପୁଁ ଏ[5] କଷ୍ଟ ପାଇ । ୪୮୭ ।
ଏବେ ଯେ ଗୋବିନ୍ଦ ଭକ୍ତି ତୁମ୍ଭ କଲୁ[6]
ତୋର ଚିତ୍ତ ବୃତ୍ତି ମୋତେ ସମର୍ପିଲୁ । ୪୮୮ ।
ସବୁ କଷ୍ଟ ତୋର ଗଲା[7] ଦୂର ହୋଇ
କିଛି ଦିନ ଅନ୍ତେ[8] ଯିବୁ ଗୃହେ ଯାଇଁ । ୪୮୯ ।
ଯେଉଁ ଉପଦେଶ ତୋତେ ଦେବୁ କହି[9]
ସେହି ମନ୍ତ୍ର ହୃଦେ[10] ଜପ କର ତୁହି । ୪୯୦ ।
ମନ୍ତ୍ର ଜପ କଲେ[11] ନିଷ୍ପାପୀ ହୋଇବୁ
ରାଜା ହୋଇଣ ତୁ ରାଜ୍ୟକୁ[12] ପାଳିବୁ । ୪୯୧ ।
ଶ୍ରୀମୁଖ[13] ବଚନେ ଗୋବିନ୍ଦ କହଇ
ଅଧମ ଚାରଣ[14] ବାନା ତୋ ଅଟଇ । ୪୯୨ ।
ପୁଣି ପଡ଼ି ଉଠି[15] ସ୍ତୁତି ଆରମ୍ଭିଲା
ନମସ୍ତେ ଶ୍ରୀଧର ସ୍ତୁତି ସେହୁ କଲା[16] । ୪୯୩ ।
ନମସ୍ତେ ଗୋବିନ୍ଦ ମୁକୁନ୍ଦ ମୁରାରି
ଶ୍ରୀ ମଧୁସୂଦନ କୃଷ୍ଣ ଦଇତାରି । ୪୯୪ ।

---

୧ ମହାକଷ୍ଟେ (୨)
୨ ଗ୍ରାହ ନିବାରିଲ (୧)
୩ ଦାନ (୨)
୪ ଗୋବିନ୍ଦ ହୋ ତୁହି (୨)
୫ ଅର୍ଜିତ ପାତକେ (୧)
୬ ଗୋବିନ୍ଦ ଭକ୍ତ ତୁ କହିଲି (୧)
୭ ଯିବ (୧)
୮ ତୁ ଯେ (୧)
୯ ଦେବୁ ଆମ୍ଭେ କହି (୧)
୧୦ ଉପଦେଶ (୧)
୧୧ ଏମନ୍ତ ଜପିଣ (୧)
୧୨ ଗୃହେ ଯାଇ ରାଜା ପ୍ରଜାନ୍ତ (୧)
୧୩ କୃଷ୍ଣ (୧)
୧୪ ଶରଣ (୧)
୧୫ ପୁଣି (୧)
୧୬ ଦେବ ହରି ବୋଲି ସ୍ତୁତିଲା (୧)

ନାରାୟଣ ବାସୁଦେବ ଯେ ଅଚ୍ୟୁତ
ଶ୍ରୀହରି ପରମାନନ୍ଦ ଗୋପୀନାଥ । ୪୯୫ ।

ମତ୍ସ୍ୟ ରୂପେ ଜଳୁ ବେଦ[୧] ଉଦ୍ଧାରିଲ
ଶଙ୍ଖାସୁର ଦୈତ୍ୟ ପ୍ରାଣ[୨] ବିନାଶିଲ । ୪୯୬ ।

କୂର୍ମ ରୂପେ ପୃଷ୍ଠେ[୩] ଧଇଲ ମନ୍ଦର
ଗିରିରେ[୪] ସିନ୍ଧୁ ମନ୍ଥିଲ[୫] ଦେବାସୁର । ୪୯୭ ।

ବରାହ[୬] ରୂପେ ପୃଥ୍ୱୀ ଦନ୍ତାଗ୍ରେ[୭] ଧରି
ଜଳରୁ[୮] ଉଦ୍ଧରି ଦୈତ୍ୟକୁ[୯] ସଂହାରି । ୪୯୮ ।

ନମସ୍ତେ ନୃସିଂହ ହିରଣ୍ୟ ବଦାରି
ପ୍ରହଲ୍ଲାଦ ଧ୍ୟାନେ[୧୦] ସ୍ତମ୍ଭୁ ଅବତରି । ୪୯୯ ।

ନମସ୍ତେ ବାମନ ତ୍ରିବିକ୍ରମ ଦେବ[୧୧]
ଚୃପି ପାତାଳେ[୧୨] ବଳିକି ଦେଲ ଠାବ[୧୩] ।୫୦୦ ।

ନମୋ ପରଶୁରାମ ଜମଦଗ୍ନି ସୁତ[୧୪]
ଏକ ବିଂଶ[୧୫] ବାର କ୍ଷତ୍ରୀ କଲ ହତ[୧୬] । ୫୦୧ ।

ନମସ୍ତେ ଶ୍ରୀରାମ କୌଶଲ୍ୟା କୁମର
ହେଳେ ଛେଦିଲ ରାବଣ ଦଶଶିର । ୫୦୨ ।

ନମସ୍ତେ ଶ୍ରୀକୃଷ୍ଣ[୧୭] ଦେବକୀ ନନ୍ଦନ
ପୂତନା ସହିତ କଂସ ନିସୂଦନ । ୫୦୩ ।

---

୧ ନମୋ ମଚ୍ଛ ରୂପି ଜଳ (୨)
୨ ପ୍ରାଣେ (୨)
୩ ନମୋ କୂର୍ମ ରୂପ (୨)
୪ କ୍ଷୀର (୨)
୫ ମନ୍ଥିଲ ଯେ (୨)
୬ କାଳ (୨)
୭ ଦନ୍ତ ଅଗ୍ରେ (୨)
୮ ଜଳୁ (୧)
୯ ଘୋର ଦୈତ୍ୟ (୧)
୧୦ ପ୍ରହରାଦ ସ୍ତମ୍ଭରେ (୨)
୧୧ ରୂପ (୧)
୧୨ ପାତାଳେ ଚୃପି (୨)
୧୩ କଲ ଗୋପ୍ୟ (୧)
୧୪ ଅଙ୍ଗିର ତନୟେ (୨)
୧୫ ଏକୋଇଶ (୨)
୧୬ ପୃଥ୍ୱୀ ନିକ୍ଷେତ୍ର (୨)
୧୭ ରାମ (୨)

ନମୋ[୧] ଜଗନ୍ନାଥ ନୀଳାଚଳ[୨] ପତି[୩]
ସଂସାର ଉଦ୍ଧାରେ[୪] ଚତୁର୍ଦ୍ଧା ମୂରତି ।୫୦୪।
ନମୋ ବୌଦ୍ଧରୂପୀ[୫] ମୁକତିର ଦାତା
ଚତୁର୍ଦ୍ଦଶ ପୁରେ[୬] ତୁମ୍ଭେ[୬] ମାତା ପିତା ।୫୦୫।
ଇନ୍ଦ୍ର[୭] ଦେବତା ଯେ ପଦ୍ମପାଦ ସେବି[୮]
ନିତ୍ୟେ ପାଦ ସେବୁଛନ୍ତି ଲକ୍ଷ୍ମୀ ଦେବୀ[୯] ।୫୦୬।
ମୋହ ଛାର ହୀନ ନର ମାତ୍ର ହୋଇ[୧୦]
ସେ ପାଦ ମହିମା କି ପାରିବି କହି[୧୧] ।୫୦୭।
ଆରତ ଭଞ୍ଜନ ଅନ୍ତର୍ଯ୍ୟାମୀ ନାଥ
ବ୍ରହ୍ମା ଶିବ ଯାର[୧୨] ନପାଇଲେ ଅନ୍ତ ।୫୦୮।
ମୋହ ଛାର ହୀନ ପାପୀ ଜନ ହୋଇ[୧୩]
ତୁମ୍ଭର ମହିମା ଗୋଚର ନୁହଇ[୧୪] ।୫୦୯।
ଏବେ ପ୍ରଭୁ ରୂପେ ପ୍ରତ୍ୟକ୍ଷେ[୧୫] ଦେଖିଲି
ପୂର୍ବ ଜନ୍ମେ କେତେ[୧୬] ପୁଣ୍ୟ କରିଥିଲି ।୫୧୦।
ନିସ୍ତରିଲି ପ୍ରଭୁ ଦେବ[୧୭] ଚକ୍ରଧର
ମୋ ଅନ୍ତର[୧୮] କଥା ପ୍ରଭୁଙ୍କୁ ଗୋଚର ।୫୧୧।
ଏ ସଂସାରରେ[୧୯] ନାହିଁ ମୋ ସମ[୨୦] ପାମର
ଜଗତର କର୍ତ୍ତା[୨୧] ମୋତେ ହେ[୨୨] ଉଦ୍ଧର ।୫୧୨।

---

୧ ନମସ୍ତେ (୨)
୨ ନୀଳାଦ୍ରି (୨)
୩ ସ୍ଥିତି (୧)
୪ ଉଧାର (୨)
୫ ନମସ୍ତେ ପ୍ରଭୁ ହେ (୨)
୬ ଭୁବନର
୭ ଇନ୍ଦ୍ରାଦି (୨)
୮ ଶକ୍ତି (୧)
୯ ନିତ୍ୟ ଯାହା ଭଜନ୍ତି ବେଦପତି(୧)
୧୦ ଜନ ନର ଦେହୀ (୧)
୧୧ କରନ୍ତେ ଅପ୍ରାଧୀ ପ୍ରଭୁରେ ଅଟଇ(୧)
୧୨ ଇନ୍ଦ୍ର ଆଦି (୧)
୧୩ ଜନ ନର ଦେହୀ (୧)
୧୪ ତୁମ୍ଭ ମହିମା ଦେବେ ଗୋଚର ନାହିଁ (୧)
୧୫ ନୟନେ (୧)
୧୬ ତୀର୍ଥ (୧)
୧୭ ରକ୍ଷ (୧)
୧୮ ମୋହ ହୃଦ (୧)
୧୯ ସଂସାରେ ମୋଠାରୁ (୧)
୨୦ ଯେ (୧)
୨୧ ଜଗତ ପାଳକ (୧)
୨୨ ଯେ (୧)

 କୋଟି ଆଦିତ୍ୟ[1] ଯେ ତେଯକୁ[2] ଗଞ୍ଜଇ
ଶଙ୍ଖ ଚକ୍ର ଗଦା ପଦ୍ମ କରେ ଶୋଭି[3] ।୫୧୩।
କଟିରେ ବସନ ଶିରେ ଦିବ୍ୟ[4] ଚୂଳ
କଉସ୍ତୁଭ ମଣି ହୃଦେ ବନମାଳ ।୫୧୪।
ହୃଦ[5] ପଦ୍ମେ ଶୋଭ ଶ୍ରୀବତ୍ସର[6] ଚିହ୍ନ
ଚତୁର୍ବର୍ଗ ଫଳ ପ୍ରଭୁ ଭଗବାନ[7] ।୫୧୫।
ଦେଖି ଗୋବିନ୍ଦ ଯେ ପ୍ରଣମିତ ହେଲା[8]
ପାଦ ପଦ୍ମ ଧରି ସାଷ୍ଟାଙ୍ଗେ[9] ଶୋଇଲା ।୫୧୬।
କର ଯୋଡ଼ି କହେ ଶୁଣ ନାରାୟଣ
ମୋତେ କମା ଦେଲ ଦୁର୍ଭାର କସଣ ।୫୧୭।
ସତ୍ୟ[10] ମଣ୍ଡଳରେ କରିଥିଲି ରାଜା
ନାନାରୂପେ ମୁଁ ଯେ ପାଳୁଥିଲି ପ୍ରଜା ।୫୧୮।
ପୂର୍ବରେ ମୁଁ ଅବା[11] କରିଥିଲି ଦୋଷ
ଦମନ ହସ୍ତେ କଷ୍ଟ ଦେଲ[12] ବିଶେଷ ।୫୧୯
ତ୍ରୈଲୋକ୍ୟର ନାଥ[13] ଦୂଷଣ ମୋ କଥା
ଏ ଦୁଃଖ କପାଇଁ[14] ଦେଲ ଜଗତ୍ପିତା ।୫୨୦।
ରାଜା ହୋଇ କେତେ[15] ମରଣ ହୋଇଲେ
ଏହା ହୁଁ[16] ଦୂଷଣ ନାହିଁ ଆଉ ଭଲେ ।୫୨୧।
ମରଣୁ ତ ଲାଜ[17] ସଂସାରେ ହୁଅଇ
ତୁମ୍ଭେ ଅନ୍ତର୍ଯ୍ୟାମୀ କ କହିବି ମୁହିଁ ।୫୨୨।

---

୧ ସୂର୍ଯ୍ୟ (୨)
୨ ଶରୀରେ (୨)
୩ କରରେ ଶଙ୍ଖ ଚକ୍ର ଗଦା ଶୋହଇ (୧)
୪ କଟି ପୀତବାସ ଶିରେ (୧)
୫ ଶ୍ରୀ ହୃଦ (୨)
୬ ଶ୍ରୀବତ୍ସ (୨)
୭ ଦାତା ହୋଇଲେ ପ୍ରସନ୍ନ (୧)
୮ ଗୋବିନ୍ଦାଇ ପାଦେ ପ୍ରଣମିଲା (୧)
୯ ଅଷ୍ଟାଙ୍ଗେ (୧)
୧୦ ମୃତ୍ୟୁ (୨)
୧୧ ମୁହିଁ ଯେ (୧)
୧୨ ଦମନରେ କଷ୍ଟ ପାଇଲି (୧)
୧୩ ପାପୀ (୧)
୧୪ ଏତେ ଦୁଃଖ ମୋତେ (୧)
୧୫ ମାଣିଠାରେ (୨)
୧୬ ଏଥିରୁ (୧)
୧୭ ଅଧିକ (୨)

ଯେ ନାଥ ବୁଡ଼ିଲ ଲଙ୍କା ସମୁଦ୍ରରେ
ଅହାଲ୍ୟା ଭଞ୍ଜନ ଉଦ୍ଧାରିବା ବାରେ ।୫୨୩।

କି ଅପରାଧ ମୋର କହ ଭଗବାନ[1]
ଅଖିଳ ଭୁବନ ତୁମ୍ଭର ଭିଆଣ ।୫୨୪।

ସଂସାରେ[2] ଦୁରାତ୍ମା ମୋହ ପ୍ରାଏ[3] ନାହିଁ
କି ଅପ୍ରାଧ କଲି ତୁମ୍ଭ ପାଦେ ମୁହିଁ[4] ।୫୨୫।

ଶ୍ରୀହରି କପାଳେ[5] ଏତେ କଷ୍ଟ ଦେଲେ
ସଂସାରେ ରଜାଏ[6] ହସିବାକୁ କଲେ ।୫୨୬।

ଏ ଘୋର ସଂକଟୁ ଉଦ୍ଧର ହେ ହରି
ଗୁଡ଼ିବ ଜୀବନ ଶ୍ରୀଚରଣେ ଧରି ।୫ ୭।

ତାହା ଶୁଣି ହରି ହସି ସେ[7] କହନ୍ତି
କଲା କର୍ମଫଳ ଆପଣେ ଭୁଞ୍ଜନ୍ତି ।୫୨୮।

ମୋହର[8] ଭିଆଣ ସର୍ବ ଚରାଚର[9]
ଯେଝା ପାପ ପୁଣ୍ୟ ଭୁଞ୍ଜନ୍ତି ଶରୀର ।୫୨୯।

ମୋହ ବିନା[10] ସଂସାରେ କେହି[11] ନାହିଁ
ମାଣିଠାରେ ଥିବା[12] ଉରୁ କାହିଁ ପାଇଁ ।୫୩୦।

ବ୍ରହ୍ମା ବିଷ୍ଣୁ ଶିବ ତିନି ରୂପ[13] ମୋର
ସତ୍ତ୍ୱ ରଜ ତମ କରଇ ପ୍ରଚ୍ଛର ।୫୩୧।

ତିନି ରୂପେ[14] ତିନିଗୁଣ ପ୍ରକାଶଇ
କର୍ମ ଅନୁରୂପେ ଫଳାଫଳ ଦେଇ ।୫୩୨।

---

୧ କହିଲେ ନାରାୟଣ (୧)
୨ ମୋ ପରି (୧)
୩ ସଂସାରରେ (୧)
୪ ତୁମ୍ଭଙ୍କୁ ଅପ୍ରାଧ ଅର୍ଜିଲି ଗୋସାଇଁ (୧)
୫ ହରି କପାଁ ମୋରେ (୧)
୬ ସଂସାରରେ ରଜା (୧)
୭ ହସିଣ (୧)
୮ ମୋହର (୧)
୯ ଏ ସଚରାଚର (୧)
୧୦ ଗୋବିନ୍ଦଙ୍କୁ ଅନ୍ୟ (୧)
୧୧ କେ (୧)
୧୨ ମାଣିଠାକୁ ତୁ (୨)
୧୩ ଗୁଣ (୨)
୧୪ ତିନି ତିନି ରୂପେ (୨)

ପୂର୍ବ ଜନ୍ମେ ତୁହି ଅଟୁ[୧] ମୋର ଭକ୍ତ
ଭୋଗ ଭୁଞ୍ଜିବାକୁ ମନେ[୨] ହେଲୁ ଜାତ । ୫୩୩ ।
ଜନ୍ମ ଲଭି ରଜା[୩] ଅନ୍ୟାୟ ତୁ କଲୁ
କର୍ମ ଅର୍ଜିଲକୁ[୪] ଆପଣେ ଭୁଞ୍ଜିଲୁ । ୫୩୪ ।
ଯେତେ କର୍ମ କଲୁ କର୍ମ ତନ୍ତ୍ର ମତେ[୫]
ମାଣିଠାରେ ନାମ ଜପ[୬] ହୃଦଗତେ । ୫୩୫ ।
ମୋ ଚରଣେ ଚିତ୍ତ ନିରତେ ଖଟାଇ
ମାଣିଠାରେ[୭] ନାମ ଜପ କର[୮] ତୁହି । ୫୩୬ ।
ଦୃଢ଼ ଭକ୍ତି ଦେଖି ପ୍ରସନ୍ନ ହୋଇଲି
ତୋର ମନ କଥା[୯] ସମସ୍ତ ଜାଣିଲି । ୫୩୭ ।
ମୋହର ଚରଣେ ଯେତେ କଲୁ ସ୍ତୁତି
ପ୍ରସନ୍ନ ହୋଇଲି କରିବ ମୁକତି । ୫୩୮ ।
ତୋହର[୧୦] ମନବାଞ୍ଛା ଏବେ[୧୧] ପୂର୍ଣ୍ଣ ହେଲା
ଏଣୁ[୧୨] ମୋର ପାଦେ ଭକ୍ତି ଜନମିଲା । ୫୩୯ ।
ଏବେ ଯାଇଁ ଘରେ କିଛି ଦିନ[୧୩] ଥିବୁ
ଅନ୍ତେ ମୋର ପାଦେ[୧୪] ଭକତି ଲଭିବୁ । ୫୪୦ ।
ମନ୍ତ୍ର[୧୫] ଉପଦେଶ ଦେଲେଇଁ ମୁଁ ତୋରେ[୧୬]
ହୃଦଗତେ ଭାବ[୧୭] ଲଭିବୁ ମୋହରେ । ୫୪୧ ।
ମାଣିଠାରେ ବସେ ମନ୍ତ୍ର[୧୮] ଜପ କର
ମୋ ନାମ ନିରତେ ହୃଦୟେ[୧୯] ସୁମର । ୫୪୨ ।

---

୧ ଅଟୁ ତୁହି (୨)
୨ ମତ୍ତ୍ୟେ (୧)
୩ ଜନ୍ମ ରଜ କୁଳେ (୧)
୪ କର୍ମେ ଯା ଅର୍ଜିଲୁ (୧)
୫ ଯେତେ ଯେତେ କର୍ମ କଲୁ ତୁହି ମତ୍ତ୍ୟେ (୧)
୬ ଜପି (୧)
୭ ମାଣିକୋଠ (୧)
୮ ଜପକଲୁ (୧)
୯ କଥାମୁହିଁ (୨)
୧୦ ତୋହର ଯେ (୧)
୧୧ (୧) ରେ ନାହିଁ
୧୨ ଯେଣୁ (୧)
୧୩ କିଛି ଦିନେ ଘରେ ଯାଇ (୨)
୧୪ ଅନ୍ତ କାଳେ ମୋର (୨)
୧୫ ଯେନ୍ତି (୧)
୧୬ ତୋହୋରେ (୨)
୧୭ ରଖି (୧)
୧୮ ଯାଅ ବସେ ମାଣିଠାରେ (୧)
୧୯ ମୋର ନାମ ହୃଦେ ନିରତେ (୧)

ନିର୍ମଳମେ ଧ୍ୟାନ କରଏ[1] ଉତ୍ତମ
ଅଙ୍ଗ ଶୁଦ୍ଧ କରି[2] କର ନ୍ୟାସ ଗୁଣି[3] । ୫୪୩ ।
ମନ୍ତ୍ର ସାଧ ହେଲେ[4] ତପ ହୋଇ ହେବ
ଗଜମାତ୍ର ହାତେ ଗୁହ୍ୟତେ[5] କହିବ । ୫୪୪ ।
ଗୋବିନ୍ଦ ଶୁଣିଣ ପ୍ରଲମ୍ବିତ[6] ହୋଇ
ସାବଧାନ ହୋଇ ଶୁଣିମା ଗୋସାଇଁ । ୫୪୫ ।
କି ରୂପରେ ଜପମନ୍ତ୍ର[7] କରିବି ମୁହିଁ[8]
କର ଅଙ୍ଗ ନ୍ୟାସ କି ରୂପେ ଅଛଇ[9] । ୫୪୬ ।
ବ୍ରହ୍ମ ଜ୍ଞାନ ବୋଲି କେମନ୍ତ ପ୍ରକାରେ
ତା ସଂକ୍ଷେପ କରି କହ[10] ଚକ୍ରଧର । ୫୪୭ ।
ମୂଢ଼ ମତି ଅତି[11] ନ ଜାଣଇ ଗତି
ମୋତେ ବିସ୍ତାରି କହିବା[12] ଜଗତଜ୍ୟୋତି । ୫୪୮ ।
ଶ୍ରୀ ମୁଖରେ ଆଜ୍ଞା ହେଲେ[13] ଉପଦେଶ
ତାହା ଶୁଣି ମୋର[14] ଫିଟିବ ସନ୍ଦେଶ । ୫୪୯ ।
ମୂଢ଼ ଗୋବିନ୍ଦ ଚରଣରେ ଜଣାଇ
ଏ ଭବ ସାଗରୁ ଉଦ୍ଧାର ଗୋସାଇଁ । ୫୫୦ ।
ଗୋବିନ୍ଦ ବଚନ ଶ୍ରୀହରି ଶୁଣିଣ
ମନରେ ହରଷ ହେଲେ[15] ନାରାୟଣ । ୫୫୧ ।
ପ୍ରସନ୍ନ ହୋଇ[16] କରୁଣାମୟ ସିନ୍ଧୁ
ପ୍ରହସିତ ହେଲେ[17] ଜଗତର ବନ୍ଧୁ । ୫୫୨ ।

---

୧ ଧ୍ୟାଅ ଅନ୍ତର (୧)
୨ ଅଙ୍ଗ କର ଶୁଦ୍ଧି (୨)
୩ ଶୁଦ୍ଧା ମନନ ମୁଣି (୧)
୪ ଏହା ମନେ ସାଧ (୧)
୫ ଧରିକି ଯାଇ ରାଜମାଣ୍ଡି (୧)
୬ ପୁଣି ଗୋବିନ୍ଦାଇ ପ୍ରଣମିତ (୧)
୭ ତମ (୧)
୮ ଗୋସାଇଁ (୧)
୯ ଅଙ୍ଗ ନ୍ୟାସ କର ନ୍ୟାସକେ ଅଛଇ(୧)
୧୦ ତାହା ମୋତେ କହ ପ୍ରଭୁ (୧)
୧୧ ମୁହିଁ ମୂଢ଼ ମତି (୧)
୧୨ ବିସ୍ତାରି କହିବା (୧)
୧୩ ହେବ (୧)
୧୪ ଶୁଣିଲେ ମୋ (୧)
୧୫ ପ୍ରଭୁ (୨)
୧୬ ବଦନେ (୨)
୧୭ ହୋଇ (୧)

ବେନି ଭୁଜ[୧] ଟେକି ଧଇଲେ ରାଜାଙ୍କୁ[୨]
ପିତା ଯେସନ୍ତେ ଟେକି ଧରଇ ପୁତ୍ରକୁ[୩] । ୫୫୩ ।
ଅଙ୍କେ[୪] ବସାଇଣ ବେଗେ[୫] ତାଙ୍କୁ ଟେକି
ଶରୀର ଭେଦ କହନ୍ତି[୬] ବନମାଳି । ୫୫୪ ।
ବୋଲନ୍ତି ଶ୍ରୀହରି ତୁ ମୋର ଭକତ[୭]
ଯାହା ପୁଚ୍ଛା କଲୁ କହିବା[୮] ତଦନ୍ତ । ୫୫୫ ।
ବ୍ରହ୍ମଜ୍ଞାନ ବୋଲି ବିଷମ ଯେ ସନ୍ଧି
ମନ ପବନକୁ କରିବୁଟି ବନ୍ଧି । ୫୫୬ ।
ତେବେ ସିନା ତୁହି ଲଭିବୁଟି[୯] ସୁଖ
ଅଦୃଶ୍ୟ ଭୂମିକି ପାରିଲେ ସେ[୧୦] ଦେଖ । ୫୫୭ ।
ଅତୁଳକୁ ତୁଳ ପାରୁ ଯେବେ ତୁହି[୧୧]
ଜ୍ଞାନସିଂହ[୧୨] ବୋଲି ତେବେ[୧୩] ସିନା କହି । ୫୫୮ ।
ଅଜପା ଧାଇବୁ ଯେବେ[୧୪] ହୋ ରାଜନ
ଆତ୍ମା ସଙ୍ଗେ ଭେଟ ହୋଇବୁ ତୁ[୧୫] ପୁଣ । ୫୫୯ ।
ଅମାପ ମାପିବା[୧୬] ଶୁଣ ତାର ବିଧି[୧୭]
ହଂସ ଦୁଇ ନେଇ ରଖ ଦୁଇ ସନ୍ଧି[୧୮] । ୫୬୦ ।
ମନ ନୟନକୁ ଦୃଢ଼ ରୂପେ ଧରି
ନାସିକା ପବନ ଉର୍ଦ୍ଧ୍ୱଗତେ କରି । ୫୬୧ ।
ଚନ୍ଦ୍ର ଘରେ ସୂର୍ଯ୍ୟ କରିବୁଟି ବନ୍ଦି
ସୂର୍ଯ୍ୟ[୧୯] ଘରେ ଚନ୍ଦ୍ର[୨୦] ଦୃଢ଼ ରୂପେ ରୁନ୍ଧି[୨୧] । ୫୬୨ ।

---

୧ ଭୂଜକ (୧)
୨ ତାହାକୁ (୧)
୩ ଅଣେ ପୁତ୍ରକୁ କୋଳକୁ (୨)
୪ ଅଙ୍ଗେ (୨)
୫ ହନ୍ତ (୧)
୬ କହନ୍ତେ (୨)
୭ ବଡ଼ ମୋର ଭକ୍ତ (୨)
୮ କହିବୁ (୨)
୯ ନା (୧)
୧୦ ତୁ (୧)
୧୧ ଅତୁଳକୁ ତୁଳ ପାରିଲେ ସେ ରହି (୨)
୧୨ ଜ୍ଞାନ ସାଧନା (୧)
୧୩ ବୋଲିଣ (୧)
୧୪ ଅମାପ୍ନା ମାପିଲେ ତେବେ (୨)
୧୫ ହୋଇବାକ ମୁଣି (୨)
୧୬ ଅମ୍ମା ମାପବୁ (୧)
୧୭ ବୁଦ୍ଧି (୧)
୧୮ ମୋହ ମାୟା ନେଇ ରଖିବ ଅଟନ୍ଧି (୨)
୧୯ ଚନ୍ଦ (୧)
୨୦ ନେଇ (୧)
୨୧ ବନ୍ଧ (୨)

ଜଜାଣିରେ[1] ସାଧି[2] ଶ୍ୱାସ ଯେ[3] ପବନ
ପଞ୍ଚସ[4] ପ୍ରକୃତି ପଞ୍ଚମ[5] ଚରଣ । ୫୬୩ ।
ପରମ ଆତ୍ମା ପାରିବୁ ଯେବେ[6] ଚିହ୍ନି
ସିଦ୍ଧ ହୋଇବୁ ତୁ ଏହି ଦେହ ଘେନ । ୫୬୪ ।
ଶ୍ରୀହରି ବଚନେ ଗୋବିନ୍ଦ ରାଜନ
ବିନୟ ଭାବରେ ବୋଲଇ ବଚନ । ୫୬୫ ।
କର ପଦ ଯୋଡ଼ି ବିନୟି ପ୍ରଚୁର
ଶ୍ରୀ ଚରଣେ ପୁଣି[7] କରି ନମସ୍କାର । ୫୬୬ ।
ହେ ପ୍ରଭୁ କହିବା ଜ୍ଞାନର ପ୍ରଚୁର
ଯାହା ଶୁଣି ଜ୍ଞାନ ହୋଇବ ହୃଦର[8] । ୫୬୭ ।
ଭୂମିରେ ଲୋଟିଣ[9] ପ୍ରାୟେ ପଡ଼ିଶୋଇ
କୋଟିଏ ଚରଣେ[10] ଦଣ୍ଡବତ ହୋଇ । ୫୬୮ ।
ବୋଲେ ମହାପ୍ରଭୁ ଆଜ୍ଞା ହେଜ[11] ମୋତେ
ଦେହ ଭେଦ ବିଧି[12] ଜାଣିବି କେମନ୍ତେ । ୫୬୯ ।
ଦେହ ଭେଦ ବିଧି ପଚ୍ଚୁରଇ[13] ତୋତେ
ଦୟା ଯେବେ ହେବ[14] କହି ଦେବ[15] ମୋତେ ।୫୭୦।
କର ଚରଣ ଯେ ଶିର[16] ଆଦି କରି
କାହାକୁ କି ବୋଲି କୁହନ୍ତେ ବିସ୍ତାରି[17] । ୫୭୧ ।
କହନ୍ତି ଶ୍ରୀହରି ଶୁଣହେ[18] ନୃପତି
ତୁ ଯାହା ପୁଚ୍ଛିଲୁ କହିବା ତୋକତି[19] । ୫୭୨ ।

---

୧ ଜଜାଣି (୧)
୨ ସାଧିବୁ (୧)
୩ ନଶୋଧି (୧)
୪ ପଚଣ (୧)
୫ ପଞ୍ଚସ (୧)
୬ ଚେବେ ପାରିଲେ (୨)
୭ ଶ୍ରୀ ହରି ଚରଣେ (୧)
୮ ଯାହା ଶୁଣିଲେ ଜ୍ଞାନ ହୁଏ ହୃଦର(୧)
୯ ପଡ଼ିଣ (୨)
୧୦ କୋଟି କୋଟି ହୁଦେ (୧)
୧୧ ମହାପ୍ରଭୁ ଆଜ୍ଞା ହୋଇବାକ (୧)
୧୨ ବୁଦ୍ଧି ଭେଦ (୧)
୧୩ ଦେହ ଭେଦ ମର୍ମ ଚଇ ମୁହିଁ (୧)
୧୪ ହେଲ (୧)
୧୫ କହିବାକ (୧)
୧୬ ଶିର ହିଁ (୧)
୧୭ କି ବୋଲିବ କାହାକୁ କହି ବିସ୍ତରି(୨)
୧୮ ଶ୍ରୀହରି କହନ୍ତି ଭଞ୍ଜି ଯେ (୨)
୧୯ ବିଖ୍ୟାତି (୧)

ପଦେ ପଦେ[1] କର କଳ୍ପିଦେବା ତୋତେ
ତେବେ ମନ ତୋର ମିଳିବ ତି[2] ପରତେ । ୫୭୩ ।

ଚରଣ ତଳପା ଅତି ଅନୁପମ
ବାଣବାସୀ[3] ବୋଲ ତାହାର ସେ[4] ନାମ । ୫୭୪ ।

ତହିଁ ଉପରେ ଅଙ୍ଗୁଷ୍ଠି ଅଛି ରହି[5]
ପଦ୍ମ ରାଗ ବୋଲି ତାହାକୁ ଯେ[6] କହି । ୫୭୫ ।

ତହିଁର ଉପରେ ଅଛି ଯେଉଁ ରେଖ ନିକି
ତାହା ନାମ କହି ସୁକଳ ଦୋହାକି[7] । ୫୭୬ ।

ତହିଁ ଉପରେ ଯେ ବଳା[8] ଗଣ୍ଠି ନାମ
ସରଳ ଚକ୍ର ହୋ ଅଟେ ତାର ନାମ[9] । ୫୭୭ ।

ସରଳ ସେ ଚକ୍ର ଯେଉଁ ନଳୀ ଗୋଟି[10]
ମାଳାହାଡ଼ ବୋଲି[11] ସବୁ ଅଙ୍ଗେ ଯୋଡ଼ି । ୫୭୮ ।

ସେ ମାଳ ହାଡର ଉପର[12] ଚକ୍ର ଗୋଟି
ଆଣ୍ଠୁ ଠାରୁ ପାଦ ଅଛଇ ଯେ ଘେ ଟି[13] । ୫୭୯ ।

ତହିଁର ଉପର ଅନ୍ତର ଜପାମ
ପଦ୍ମ ରାଗ ବୋଲି ତାହାରନ୍ତି[14] ନାମ । ୫୮୦ ।

ତହିଁର ଉପରେ[15] ଇନ୍ଦ୍ର ପୁନ୍ତି[16] ଥାଇ
ଗୁନ୍ଦ ପଦ୍ମ ବୋଲି[17] ତାହାକୁ ସେ କହି । ୫୮୧ ।

---

୧ ପଦ ପଦ (୧)
୨ ହିନା ମନେ ଯିବୁଟି (୧)
୩ ବାଇ ବଇଂଶୀ (୧)
୪ ତାର (୧)
୫ ଅଛଇ (୨)
୬ କର ତାହା (୨)
୭ ମଦ ୫୭୬ (୨) ରେ ହିଁ ଅଛି
୮ ଖଣ୍ଡୁ (୧)
୯ ସରଳ ଚକ୍ର ତାହାର ଅନୁପାମ (୨)
୧୦ ତଳନ୍ତା ଯେ ଚକ୍ର ହାଦେ
ଯେଉଁ ନଳୀ ଗୋଟି (୧)
୧୧ ମାଳ ହାଦ ନାମ (୧)
୧୨ ମାଳ ହାଡର ସେ ଯେଉଁ (୧)
୧୩ ଯାଏ ଅଛି ସେହି (୧)
୧୪ କର ତାହା
୧୫ ଉପରେଣ (୧)
୧୬ ଇନ୍ଦ୍ରି (୨)
୧୭ ପଦ୍ମ ଘେନ (୨)

ତହିଁର ଉପରେ[୧] ଚନ୍ଦ୍ର ଚକ୍ର ସ୍ଥାନ[୨]
ବଡ଼ବାନଳ ବୋଲନ୍ତି ତାର[୩] ନାମ । ୫୮୨ ।
ତହିଁ ଠାବରେ[୪] କମଳ ଚକ୍ର କରତା[୫]
ଉପରେ ବସନ୍ତ ଅନଳ ଦେବତା । ୫୮୩ ।

ଅଗ୍ନି ସଙ୍ଗେ ଅଛୁ ଅଣଗୃଷ ବାଇ[୬]
ତ୍ରିବେଣୀ ସନ୍ନିଟେ ଅଜ୍ଞାନ ହୁଅଇ[୭] । ୫୮୪ ।

ନିତ୍ତ ପ୍ରତି ତହିଁ କରଇ ଯେ ଯୋଗ
ତାହାର ନାମଟି[୮] ସ୍ୱଚ୍ଛଣର ଯୋଗ । ୫୮୫ ।
ସେହି ଅଗ୍ନି କାଯ୍ୟା କରଇ ହୋ ସିଦ୍ଧି[୯]
ଯାଇଁ ତା ଲାଗଇ ପାତାଳକୁ ଭେଦି[୧୦] । ୫୮୬ ।
ସପ୍ତ ପାତାଳକୁ ଭେଦବୃତି[୧୧] ଯେବେ
ମୃତ୍ୟୁକାର ଦେହ[୧୨] ସିଦ୍ଧ ହେବ ତେବେ । ୫୮୭ ।
ତହିଁପରେ ସ୍ୱସ୍ତିକ ହୃଦ ଚକ୍ର ସ୍ଥଳ[୧୩]
ପ୍ରାଣ ସଙ୍ଗେ[୧୪] ସେହି ଠାବଁ ହୋଏ ମେଳ[୧୫] । ୫୮୮ ।
ତହିଁ ପରେ ଅଛୁ ଶମ୍ଭୁ ଲିଙ୍ଗ[୧୬] ଗୋଟି
ପ୍ରାଣ ଲିଙ୍ଗ ସେହି[୧୭] ଅଛଇ ସେ ଯୋଟି । ୫୮୯ ।
ତହିଁ[୧୮] ପାଖେ ଅଛି[୧୯] ବଜ୍ରଗଣ୍ଠି କାଠି
ପରମ ଆତ୍ମାକୁ ସେହିଠାରେ ଭେଟି । ୫୯୦ ।

---

୧ ଉପରେଣ (୨)
୨ ଅନ୍ତ୍ରର ଉଗ୍ରାମ (୨)
୩ ବୋଲି ତାହାର (୨)
୪ ସେ ଠାବରେ (୧)
୫ କରତା (୧)
୬ ବାୟୁ (୨)
୭ ଯେ ହୋଇ (୨)
୮ ତାର ନାମ ଗୋଟି (୧)
୯ ସିଦ୍ଧ (୧)
୧୦ ଭେଦ (୧)
୧୧ ସପତ ପାତାଳକୁ ଭେଦ ବୃଢ଼ (୧)
୧୨ ମୃତ୍ୟୁ ଦେହ ପୁଣି (୧)
୧୩ ସ୍ଥାନ (୧)
୧୪ ଲିଙ୍ଗ (୧)
୧୫ ଠାରେ ବୋଲି ଜାଣ (୧)
୧୬ ଗୋଲ ହାଠ (୧)
୧୭ କୁ ଯେ (୧)
୧୮ ତେଣ (୨)
୧୯ ଥାଇ (୨)

ତଜଗଣି କାଠି ପରେ ଅଛି ବାଟ
ତହିଁ ପରେ ଅଛି ବଜ୍ର ଯେ କବାଟ[୧] ।୫୯୧।
ଘଣ୍ଟିକାର ଘର[୨] ତାହାକୁ ଯେ ବୋଲି
ତ୍ରିବେଣୀ[୩] ବହୁଛି ତହିଁକ ସେ ଫେରି[୪] ।୫୯୨।
ସୂତଳ ଛନ୍ଦ ବିଷମ ମଧ୍ୟେ[୫] ବନ୍ଧ
ତହିଁରେ କପାଳୀ ଦାଣ୍ଡ ଅଛି ଫାନ୍ଦ[୬] ।୫୯୩।
ଜ୍ଞାନ ଚକ୍ର ବୋଲି ତହିଁକ ସେ ଭେଦ
ଯେଉଁ ଠାନ୍ତୁ ଆଦିତ୍ୟଙ୍କ ଯେ[୭] ସମ୍ବାଦ ।୫୯୪।
ତହିଁ ପରେ ଶୂନ୍ୟ ଗିରି ଅଛି ପୁଣ
ନାମ ଅଟଇ ଯେ[୯] ଶ୍ରୀହଟ୍ଟ ପାଟଣା ।୫୯୫।
କପିଳାସ ଗିରି ବୋଲିବା[୧୦] ତାହାକୁ
ତ୍ରିକୂଟ ଥାନରେ ଲଏ ହୋଏ ଯାକୁ[୧୧] ।୫୯୬।
ତହିଁ[୧୨] ପରେ ଅଛି କଣ୍ଠୁ ଯେ[୧୩] ଗିରି
ମେରୁ ପୁଚ୍ଛ[୧୪] ବୋଲି ନାମଟି ତାହାର ।୫୯୭।
ସହସ୍ର ଦଳ କମଳ ତହିଁ ସ୍ଥିତି[୧୫]
ତହିଁର ଉପରେ ସେ ହୁଅଇ[୧୬] ସ୍ଥିତି ।୫୯୮।
ସେଠାରେ ଦୁହିଙ୍କର ହୋଏ ସମର
ସହସ୍ର ଦଳ ପରେ ସ୍ଥିତି[୧୭] ତାହାର ।୫୯୯।
ପବନ ଲେଶ ତହିଁ ନ ପାରେ[୧୮] ଯାଇଁ
କାୟା ଲୁଚୁଛନ୍ତି ଶୂନ୍ୟ ପୁରେ[୧୯] ଥାଇ ।୬୦୦।

---

୧ ବଜ୍ର ଛନ୍ଦ ଘାଟ (୨)
୨ ଦ୍ୱାର (୧)
୩ ତ୍ରିବେଦେ (୧)
୪ ମେଲି (୧)
୫ ମଧ୍ୟେ ସମସେ (୨)
୬ ତହିଁ ଭିତରେ କପାଟ ଅଛି ଛନ୍ଦ (୨)
୭ ଯେଉଁଠାରେ ଲୟ ଦୁହିଁଙ୍କ (୨)
୮ ଭିତରେଣ (୨)
୯ ସେ ଅଟଇ (୨)
୧୦ ହୋ ମୂଣ (୨)
୧୧ ତ୍ରିକୂଟ ସ୍ଥାନ ନେଇ ଈଶ୍ୱରଙ୍କୁ (୧)
୧୨ ସନ୍ଧି (୧)
୧୩ ର (୧)
୧୪ ଉମ୍ବରୁ ପଛ (୨)
୧୫ ସହସ୍ର ଦଳେ ଉଦେ ହୋଇ ଅଛନ୍ତି (୧)
୧୬ ହୋଇଛନ୍ତି (୧)
୧୭ ସତ ଦଳ ସ୍ଥିତି ଯେ (୨)
୧୮ ପବନରେ ଲେଶ ନ ପାରିବ (୧)
୧୯ ପରେ (୧)

ଛନ୍ଦିଁପରେ ଅଛୁ[1], ହେମଗିରି ସ୍ଥାନ
ନାମ ଗୋଟି ଅଟେ ଅମନ ସୁମନ[2] । ୬୦୧ ।
ମେରୁ ଉପରେ ଅଛଇ ସେ ଉଦ୍ଧାଣ୍ଡ[3]
ପ୍ରାଣମାନେ ଛନ୍ଦି ହେଉଛନ୍ତି ବାଣ୍ଡ[4] । ୬୦୨ ।

ସେଠାରୁ[5] ପବନ ବନ୍ଧଇ ଉଜାଣି
ପାଳଟି ଉଠଇ ସରୋବର ପାଣି । ୬୦୩ ।
ଏମନ୍ତ ରୂପେ ଯୋଗ ସାଧନ୍ତୁ ବୀର[6]
ଭବ ନଦୀ ସିନା ତେବେ ହୋଇ[7] ପାର । ୬୦୪ ।

ସେ[8] ଭବ ନଦୀକୁ କହିଦେବା ତୋତେ
ପନ୍ଦିର[9] କାଟେଣି ଶବ ଯେ[10] ଗୁପତେ । ୬୦୫ ।
ଆବର କଥା ଏ ଶୁଣ ହେ[11] ଗୋବିନ୍ଦ
ତାଳୁ ପରେ ସ୍ଥିତି[12] ଦେବଙ୍କ ଦେବାଧି । ୬୦୬ ।

ଯେଉଁ ବୃକ୍ଷ ମୂଳେ[13] ଅଟେ ଆଦିମୂଳ
ପାଣି ଦେଇ ତାକୁ କରହେ ଶୀତଳ । ୬୦୭ ।
ବୃକ୍ଷ ପରେ ଅଛି ବିହଙ୍ଗମ ବସା
ଉଡ଼ି ଯିବାକୁ ପୁଣି ଲୋଡ଼ଇ ହଂସା । ୬୦୮ ।

ପବନ ଗଲେ କାୟା ନିର୍ମଳ[14] ହୋଇ
ଭ୍ରମର ରସଇ କମଳରେ[15] ଯାଇଁ । ୬୦୯ ।
ଭ୍ରମର କମଳ ଏକହଟି ଯେବେ
କହୁଛନ୍ତି ଗୋବିନ୍ଦ ସାଧିବୁଟି[16] ତେବେ । ୬୧୦ ।

---

୧ ଛନ୍ଦିର ଉପରେ (୧)
୨ ଅମାନସେମାନ (୨)
୩ ସେ ମେରୁରେ ଅଛି ଛନ୍ଦମନ୍ଦ ପାଠ (୨)
୪ ବାତ (୨)
୫ ସେଠାରୁ (୧)
୬ ରୂପରେ ସାଧୁନ୍ତ ବଶୁର (୧)
୭ ଭବନଦୀ ତେବେ ହୋଇଯିବୁ (୧)
୮ ଏ (୧)
୯ ପନ୍ଦ୍ରି (୧)
୧୦ ମୁଣ୍ଡ ଶବ (୧)
୧୧ କଥା ଶୁଣ ଭକ୍ତ (୧)
୧୨ ସ୍ଥିତ (୨)
୧୩ ନାମ (୨)
୧୪ ପଞ୍ଚିଙ୍କ ଭେଟିଲେ ନିର୍ମଳ ଯେ (୧)
୧୫ ରସେ କମଳ ପରେ (୧)
୧୬ ସିଦ୍ଧି ହେବ (୧)

ଦଶ ଦୁଆର ପଚିଶ ବନ୍ଧ[୧] ନିରୋଧି
ଯେଉଁ ଖବେ କାୟା ହୋଇବ[୨] ତୋ ସିଦ୍ଧି । ୬୧୧ ।
ଏକା ପବନକୁ[୩] ପାରିଲେ ନିରୋଧି
ହଂସା ଯେ ପଡ଼ିବ[୪] ସରୋବରେ ବନ୍ଦୀ । ୬୧୨ ।
କୁଣ୍ଡଳୀ ଚକ୍ର ବୋଲି ଅତି କଠିନ
ତହିଁ ଯାଏ ସିବ[୫] ଉଜାଣି ପବନ । ୬୧୩ ।
ମନ ପବନକୁ ଏକତ୍ରେ ରଖିବୁ[୬]
ପଞ୍ଚସ[୭] ପ୍ରକୃତି ଏକାଦ୍ଧ[୮] କରିବୁ[୯] । ୬୧୪ ।
ନେତ୍ରରୁ କର ଡିଶ୍ରୁ ପରେ ଥୁଅ ମନ[୧୦]
ଦେଖିବେ ସେ ରତ୍ନବ ତହିଁରେ ଚୈତନ୍ୟ[୧୧] । ୬୧୫ ।
ତିନି ଜାତ୍ରି ମଧ୍ୟେ ଅଛି ସେ ନାଳ[୧୨]
ତହିଁରେ କମାଉ ଶୋଭନ୍ତି ଅଛି ସାଳ[୧୩] । ୬୧୬ ।
କର୍ମ ଗଢ଼ାଇ ସେ[୧୪] ସେହିଠାରେ ବସି
ଯେଉଁ ପବନକୁ ପ୍ରକୃତି କି ଆସି । ୬୧୭ ।
ଗଙ୍ଗା ଯମୁନାକୁ ସରସ୍ୱତୀ[୧୫] ଠେଲି
ଗଣ୍ଠି ସେ ପଡ଼ିଛି[୧୬] ପ୍ରକୃତିର ମେଳେ[୧୭] । ୬୧୮ ।
ତହିଁର ଉପରେ ପ୍ରକୃତି[୧୮] ଉପାମ
ଉତପ୍ନ ଗିରି ବୋଲି ତାହାର ନାମ । ୬୧୯ ।
ସେଠାକୁ ଗୋବିନ୍ଦ ପ ଶ୍ରବୁକି[୧୯] ଯାଇ
ପାପ କ୍ଷୟ ଯାଇ[୨୦] ନିର୍ମଳ ହଶଇ । ୬୨୦ ।

---

୧ ବୃ (୧)
୨ ହୋଇବାକେ (୧)
୩ ଏମନ୍ତ ପବନ (୧)
୪ ହଂସ ଯେ ପଡ଼ିଲ (୧)
୫ ତହିଁ ପିଇ ଯେବେ (୧)
୬ ରଖିବ (୧)
୭ ପଚିଶ (୧)
୮ ଅଯୁତ (୧)
୯ କରିବ (୧)
୧୦ ଥୋଇଲେ ସେମାନ (୨)
୧୧ ଚିଆ ଚଇତନ (୨)
୧୨ ମଧ୍ୟରେ ଅଛି ନାଡ (ବାଡ଼) (୧)
୧୩ କାଗାଲୀ ପାଛ ଅଛି ତାଳ (୧)
୧୪ କର୍ମ ଗତେ ପ୍ରୀତି (୧)
୧୫ ସରସ୍ୱତୀ ନିରାଳମ୍ବ (୨)
୧୬ ଗଣ୍ଠି ପଡ଼ିଅଛି (୧)
୧୭ ମୂଳେ (୧)
୧୮ ତପ୍ପୃରେ ଅସିଯାଇ ପ୍ରଚ (୧)
୧୯ ପାରିଲେବ (୧)
୨୦ ହୋଏ (୨)

କର୍ଣ୍ଣସେନ[୧] ବୋଲି ଚହିଁର ଦୁଆଶ୍ରି
ଘାଟ ସେ ସାଧଇ ଦ୍ୱାଆର[୨] ଆବୋଶ । ୬୨୧ ।
ତାହା ସଙ୍ଗେ ଯେବେ ପରଚେ[୩] ହୁଅଇ
ବାଟ ଗୁଡ଼ି ଦେଲେ[୪] ଭିତରକୁ ଯାଇ । ୬୨୨ ।
ତହିଁପରେ ଅଛି ଆକାଶର ପୁର
ଦେବମାନଙ୍କୁ[୫] ସେ ନୁହଁଇ ଗୋଚର । ୬୨୩ ।
ଅଣଗୁଷ୍ଠ ବାୟୁ ସେଠାନ୍ତି[୬] ପ୍ରକଶି
ନିଶ୍ଚଳ ହୋଇ ସେ ଯୋଗିଥାନ୍ତି[୭] ବସି । ୬୨୪ ।
ଦ୍ୱାଦଶ ଅଙ୍ଗୁଳ ଥାଇ ହଂସ ଦ୍ୱାର[୮]
ଜ୍ଞାନ ପବନଟି ତାହାର ଆଧାର । ୬୨୫ ।
ସେ ପଥ ନିରୋଧ କର କରି[୯] ହେତୁ
ତେବେ ସେ ଲଗିବ ସମାଧିର ତନ୍ତୁ[୧୦] । ୬୨୬ ।
ତ୍ରିବେଣୀ ଧାର ଯେ ବହଇ ପ୍ରଚଣ୍ଡ
ରୁହାଇ ନ[୧୧] ପାରିଲେ ନ ଥିବଟି[୧୨] ପିଣ୍ଡ । ୬୨୭ ।
ଏହିଠାରେ[୧୩] ବନ୍ଧ ନିବନ୍ଧରେ[୧୪] ଦେଇ
ଭଙ୍ଗି ଗଲେ[୧୫] ବନ୍ଧ ସମ୍ଭାଳି[୧୬] ନୁହଇ । ୬୨୮ ।
ଶିଶୁ ମୁନି ନାମେ ଏକଇ ପାହାଶ୍ରି[୧୭]
ବନ୍ଧ ସେ ବାନ୍ଧିଛି ଅଷ୍ଟ ଯତ୍ନକରି[୧୮] । ୬୨୯ ।
ତହିଁ ପରେ ଅଛି ପରମ ଆକାଶ
ଦେବ ଲୋକମାନେ ନ ପାବନ୍ତି ଲେଶ । ୬୩୦ ।

---

୧ ଦ୍ୱାନ୍ଦ ଦେଖା (୨)
୨ ଘାଟ ସାଧେବସି ପଥକୁ (୨)
୩ ତାହାଙ୍କ ସଙ୍ଗତେ ପରିଚେ ଯେବେ (୨)
୪ ବୋଧି ସେ ଯାଉଲେ (୧)
୫ ଲୋକଙ୍କୁ (୨)
୬ ସେଠାରେ (୧)
୭ ହୋଇଣ ଯେତୁ (୧)
୮ ଯେ ହରସ ତାର (୨)
୯ ନିରୋଧି କରିବୁଟି (୧)
୧୦ ତେବେ ଲାଗିବ ସମାଧି ତୋର ତନ୍ତୁ (୨)
୧୧ ବୁଝାଇ (୨)
୧୨ ନ ଥଲେ (୧)
୧୩ ଯେଣୁ (୨)
୧୪ ବାଉନର ବନ୍ଧ (୨)
୧୫ ଭାଙ୍ଗି (୨)
୧୬ ପୁଣ ସମ୍ଭାଳ (୨)
୧୭ ଚନ୍ଦ୍ର ବାନ୍ଧେ ଯତ୍ନେ କରି (୨)
୧୮ ବାନ୍ଧି ଚଲେ ପୁଣ ନୋହିବ ସମ୍ଭାଳି (୨)

ଶୁଣ ହେ[୧] ଗୋବନ୍ଧ ଜ୍ଞାନର ବିଚାର
ଦେହରକୁ ଧରିବୁ ଜଗିଥା ଦୁଆର[୨] । ୬୩୧ ।
ଆଉ ଯେତେ କଥା ଅଛି[୩] ଅକାରଣ
ଧନ ନେଲେ ଦେହ[୪] ସରେ ବଡ଼ପଣ । ୬୩୨ ।
ତେଣୁ ଗୋବନ୍ଧ ହୋ କହୁଅଛି ତୋତେ
ପଶ୍ଚାତେ ତୁ ପୁଣି ନ ବାଚ୍ଛିବୁ[୫] ମୋତେ । ୬୩୩ ।
ତା ଶୁଣି ଗୋବନ୍ଧ ବୋଲଇ ବଚନ
ଅଜ୍ଞାନ ପାପୀ ମୁଁ ମୂଢ଼[୬] ଜ୍ଞାନ ହୀନ । ୬୩୪ ।
କେଉଁ ଠାରେ ଯୋଗ ସାଧିବଇଁ ମୁହିଁ
ଶ୍ରୀଚରଣ ମୋତେ[୭] କହିବା ଗୋସାଇଁ । ୬୩୫ ।
ଶ୍ରୀହରି ବୋଲନ୍ତି ଏ ନିଗମ[୮] ସ୍ଥାନ
ଏ ସ୍ଥାନେ[୯] ସାଧିଲେ ପାଇ[୧୦] ଦିବ୍ୟ ଜ୍ଞାନ । ୬୩୬
ଗିରି ଯେ କନ୍ଦର ପୂର୍ବ ନଦୀ ତଟ[୧୧]
ଜନ ଜନ୍ତୁଙ୍କର[୧୨] ନ ପାଇବୁ[୧୩] ଭେଟ । ୬୩୭ ।
ଆହାର ନିରୋଧି ଭକ୍ଷିବୁ ଯେ[୧୪] ବାୟୁ
ଏମନ୍ତ ପ୍ରକାରେ ବଢ଼ଇ ଯେ[୧୫] ଆୟୁ । ୬୩୮ ।
ତେବେ ସେ ପ୍ରାପତ ହୋଅଇଟି ଜ୍ଞାନ[୧୬]
ତୋ ଆଗେ କହିଲି[୧୭] ଜ୍ଞାନର ବିଧାନ । ୬୩୯ ।
ହରି ବଚନେ କହେ[୧୮] ଭକ୍ତି[୧୯] ଗୋବନ୍ଧ
କି ରୂପରେ ପ୍ରଭୁ ଜ୍ଞାନ ଯେ ସାଧିବ[୨୦] । ୬୪୦ ।

---

୧ ଶୁଣ (୨)
୨ ଧଇଲେ ଜଗିଥିବୁ ଦ୍ୱାର (୧)
୩ ସବୁ (୧)
୪ ସରି ଗଲେ (୧)
୫ ପଶ୍ଚାତେ ନ ପୁଣି ତୁ (୨)
୬ ମୁହିଁ ଯେ (୨)
୭ ପ୍ରଭୁ (୧)
୮ ବୋଇଲେ ନିଗମ ସେ (୧)
୯ ଏମନ୍ତ (୧)
୧୦ ପାଇବୁ (୨)
୧୧ ଗିରିକନ୍ଦରେଣ ଯେ ନଦୀର ତଟ (୨)
୧୨ ଜଳ ଜନ୍ତୁ [illegible] (୨)
୧୩ ପାଇବେ (୨)
୧୪ ଯେ ରଖିବୁ (୨)
୧୫ ହି (୨)
୧୬ ତେବେ ପ୍ରାପତ ହୋଇ ଦିବ୍ୟ ଜ୍ଞାନ (୨)
୧୭ କହିଲିଁ (୨)
୧୮ ଶ୍ରୀହରି ବାକ୍ୟ (୧)
୧୯ ଭକ୍ତ ଯେ (୨)
୨୦ ମହାପ୍ରଭୁ ଜ୍ଞାନ ସାଧି (୧)

ସେ କଥା କହ ଯେ[୧] ବ୍ରହ୍ମାଣ୍ଡ ଗୋସାଇଁ
ଯେଉଁ ରୂପେ ଜୀବ ମୁକତ ହୁଅଇ[୨] । ୬୪୧ ।

ତୁମ୍ଭ ନାମ ଅଟେ ଅନାଥଙ୍କ[୩] ନାଥ
ଜଗତ କରତା ବ୍ରହ୍ମାଣ୍ଡର ନାଥ[୪] । ୬୪୨ ।

ପ୍ରମାଣ ଯେ[୫] କଥା କହିଲ ଗୋସାଇଁ
ଏଡ଼େ ବଡ଼ ଜ୍ଞାନ ବୁଦ୍ଧି ନ ପାଉଁ[୬] । ୬୪୩ ।

ଶ୍ରୀମୁଖରେ ଅଜ୍ଞା ଦେଲେ ଯେ ଗୋସାଇଁ[୬]
ନିହାରେ ପବନ ଭକ୍ଷିବାର ପାଇଁ । ୬୪୪ ।

ଆହାର ବନାତ ନ ରହଇ[୭] ହଂସ
ହଂସ ଉଡ଼ଗଲେ[୮] ଯେ ଗ ହୁଅଇ ଧ୍ୱଂସ । ୬୪୫ ।

ଉଡ଼ିଗଲେ ହଂସ ଜୀବକୁ ଯେ ହାନି[୯]
ଯୋଗକୁ ସାଧିବ କହାକୁ ମୁଁ ଘେନି[୧୦] । ୬୪୬ ।

ଶ୍ରୀହରି ବୋଲନ୍ତି ଏ ପ୍ରାଣ ଯିନା[୧୧]
ତୋ ମନ[୧୨] ସନ୍ଦେଶ ଫେଡ଼ି ଆମ୍ଭେ[୧୩] କନା । ୬୪୭ ।

ଶୁଣ ହେ ଗୋବନ୍ଧ ତୁ ମୋର ଭକତ[୧୪]
ତେଣୁ କରି ପୁଚ୍ଛା କଲୁ ତ[୧୫] ଗୁପତ । ୬୪୮ ।

ଯେତେବେଳେ ଦେହୁଁ ଉଡ଼ିନିବ ହଂସ[୧୬]
ଭିକ୍ଷା[୧୭] ତୁ ମାଗିବୁ ଶୂନ୍ୟ ଯେ[୧୮] ପୁରୁଷ । ୬୪୯ ।

---

୧ ତୁ (୧)
୨ ମୋର ଜୀବ ଟଳ ହୋଇ (୧)
୩ ଅନାଥର (୧)
୪ ତୁମ୍ଭେ ସୃଷ୍ଟିଭୂତ (୧)
୫ ସେ (୧)
୬ ୬୪୩ର ଦ୍ୱିତୀୟ ଓ ୬୪୪ର ପ୍ରଥମ ଧାଡ଼ି, (୨)ଯୁ ପୋଥିରେ ହିଁ ଅଛି
୭ ଜନା ଯେ ନ ରହିବ (୧)
୮ ଯେବେ ଉଡ଼େ (୧)
୯ କହୋ ଯିବ ଘେନି (୧)
୧୦ ସାଧି କରିବ କାହା ଘେନି (୧)
୧୧ ବୋଇଲେ ପ୍ରମାଣ ସେ ଥିନା (୧)
୧୨ ତହିଁର (୧)
୧୩ କହୁ (୧)
୧୪ ତୁ ମୋହର ଭକ୍ତ (୨)
୧୫ ତେଣୁ ଗୁପତ କଥା କହୁ ବାଂକତ(୨)
୧୬ କହୁଅଛୁ ଶୁଣ ତହିଁର ସନ୍ଦେଶ (୧)
୧୭ ଭକ୍ଷିବୁ (୧)
୧୮ (୧) ରେ ନାହିଁ

ସେ ଶୂନ୍ୟ[1] ଭିତରେ ଏକନ୍ତିଁ[2] ଯୁବତୀ
ଘରକୁ[3] ଆବୋରି ଥାଇ ନିଜ ପ୍ରଭି । ୬୫୦ ।
ତାକୁ ଦେଖି ଭିକ୍ଷା ମାଗିବାକୁ[4] ଭଲେ
ପାଇବୁ ଓଁକାର[5] ଅଜ୍ଞା ସେହୁ କଲେ[6] । ୬୫୧ ।
ସେହି ତୋତେ ପ୍ରସନ୍ନରେ ଦେବେ ଯାହା[7]
ସିଦ୍ଧ ହୋଇବୁ ତୁହି ପାଇଲେ[8] ତାହା । ୬୫୨ ।
ତା ଶୁଣି ଗୋବିନ୍ଦ କରେ ନମସ୍କାର
ମାନବ[9] ଦେହ କଳିଯୁଗେ ମୋହର[10] । ୬୫୩ ।
ଏଡ଼େ ଛନ୍ଦକୁ ମୁଁ[11] କେମନ୍ତ ଜାଣିବି
କେଉଁ ରୂପେ ଅବା ତା ଭେଟ ପାଇବି[12] । ୬୫୪ ।
ତ୍ରୈଲୋକର ନାଥ ତୁମ୍ଭେ[13] ଗଦାଧର
ଏ ପାପରୁ ମୋତେ ବାରେ ରକ୍ଷାକର । ୬୫୫ ।
ଭେଦ କଥାମାନ[14] କହିଦେବା ହରି
ତେବେ ସିନା ପାରିବି ମୁ ଚିତ୍ତେ[15] ଧରି । ୬୫୬ ।
ମାତା ପିତା ବନ୍ଧୁ ଶ୍ରୀହରି ମୋହର
ଚରଣେ ଶରଣ ରଖ ଚକ୍ରଧର । ୬୫୭ ।
ଏ ଘୋର ସଂସାରେ ମହିମା ବିସ୍ତାର
ଜଗତରୁ ମୋତେ କରନ୍ତେ ନିସ୍ତାର[16] । ୬୫୮ ।
ତାହା ଶୁଣି ପ୍ରଭୁ କହନ୍ତି ସେ ହସି
ଉତ୍ତମ ବଚନ ଭକତେ ପ୍ରକାଶି । ୬୫୯ ।

---

୧ ପଥ (୨)
୨ ଏକାଙ୍କି (୨)
୩ ଘରେ ସେ (୨)
୪ ମାଗିବୁ ତୁ (୨)
୫ କାରଣ (୨)
୬ ଦେଲେ (୧)
୭ ତୋତେ ସେ ପ୍ରସନ୍ନେ ଦେବେ ନିନ୍ଦୋ ଯାହା (୨)
୮ ତୁ ପାଇଲେ ହୋ (୨)
୯ ମାନବର (୨)
୧୦ ସାର (୨)
୧୧ ଛିହି କିଛି (୨)
୧୨ ଭେଟ ତାର ମୁଁ କରିବି (୨)
୧୩ ତୁମ୍ଭେ ତ୍ରୈଲୋକ୍ୟନାଥ ହେ (୨)
୧୪ ସବୁ (୨)
୧୫ ତେବେ ସେ ପାଇବି ଦୃଢ଼ ରୂପ (୨)
୧୬ ଜଗତେ ପ୍ରକାଶ ନିସ୍ତାର ମୋହର (୨)

ଯେହୁ ଭିକ୍ଷା ଦେବ ସେ ମହା[1] ସୁନ୍ଦରୀ
ତାହା ସବୁ ତୋତେ[2] କହିବା ବିସ୍ତାରି । ୬୬୦ ।

ଯୋଗବଳେ ତାଙ୍କୁ[3] ପ୍ରସନ୍ନ କରାଇ[4]
ଆକାର[5] ନ ଥିବ ଯୋଗ ବଳେ ଧାଇ[6] । ୬୬୧ ।

ଆକାର[5] ନ ଥିବ ପବନ ଅଟଇ
ଶୂନ୍ୟ ସିନା ସେହୁ[7] ପ୍ରକାଶ ହୁଅଇ । ୬୬୨ ।

ପବନରେ ଝଦା ଶୂନ୍ୟେ[8] ନାହିଁ ଆନ[9]
ସେ[10] ଭିକ୍ଷା ମାଗିବୁ ଶୁଣହେ ରାଜନ[11] । ୬୬୩ ।

ଆନ ଦ୍ରବ୍ୟ ଯେତେ ନୁହଇ ସେ[12] ଲେଖା
ପବନର ଭିକ୍ଷା ଜୀବନକୁ ସାଖୀ[13] । ୬୬୪ ।

ପ୍ରକୃତିମାନଙ୍କୁ[14] ଦକ୍ଷିଣ[15] ଦେଇ
ତେବେ ସେ[16] ଦେହ ତୋର ସମ୍ପୂର୍ଣ୍ଣ ହୋଇ[17] । ୬୬୫ ।

ଯେବେ ତୁ[18] ରାଜନ ଭକ୍ଷିବୁ ହୋ[19] ବାୟୁ
ସେ ଦିନୁ ବଢ଼ିବ ଜୀବନର[20] ଆୟୁ । ୬୬୬ ।

ଚନ୍ଦ୍ର ଘରେ ସୂର୍ଯ୍ୟ ରଖ ପରଖର[21]
ସୂର୍ଯ୍ୟ ଘରେ ଚନ୍ଦ୍ର ଦେବତାଙ୍କୁ ଭର[22] । ୬୬୭ ।

---

୧ ସେହୁ ସେ (୨)
୨ ତୋତେ ପୁଣ (୨)
୩ ତାହା (୨)
୪ କରିବୁ (୧)
୫ ଆକାଶ (୧)
୬ ଯେ ମନେ ଧ୍ୟାଇବୁ (୧)
୭ ଶୂନ୍ୟ ସିନା ସେହି (୨)
୮ ଶୂନ୍ୟ (୨)
୯ ଅନ୍ୟ (୨)
୧୦ ସେହି (୧)
୧୧ ମାଗି ନେବୁ ହୋ ରାଜନ (୧)
୧୨ ନୋହେ ସେହୁ (୧)
୧୩ ପବନ ଭିକ୍ଷା ତୋ ଜୀବନକୁ ସଖା (୧)
୧୪ ମାନ ସବୁ (୧)
୧୫ ଦକ୍ଷିଣ (୧)
୧୬ ତ (୧)
୧୭ ହୋ ଶଂସନ୍ତି ହୁଅଇ (୧)
୧୮ ଏବେ ସେ (୨)
୧୯ ଭକ୍ଷିବାକୁ (୨)
୨୦ ଜୀବର ସେ (୧)
୨୧ ଚନ୍ଦ୍ର ସୂର୍ଯ୍ୟ ନେଇ ରଖ ପ୍ରାଣ ଘର (୧)
୨୨ ଧର (୧)

ଦେହର ବଇରି ଅଟଇ ଯେ ଗ୍ଳାନି
ତାହା[1] ଏବେ ଗୋବନ୍ଧ ପାରିବୁ ଲଙ୍ଘି[2] । ୬୬୮ ।
ତେବେ ସିନା ଦେହ ହୋଇବାକ ସିଦ୍ଧ[3]
କହିଦେଲୁଁ ତୋତେ ଆତ୍ମତତ୍ତ୍ୱ[4] ବୋଧ ୬୬୯ ।
ଗୋବନ୍ଧ ବୋଲଇ[5] ପ୍ରଭୁ ନରହରି
ଗ୍ଳାନିକି ପାଇବ[6] କେମନ୍ତ ଯେ[7] କରି । ୬୭୦ ।
ଶ୍ରୀହରି ବୋଲନ୍ତି ଶୁଣ ହେ ଭକତ[8]
ସିଦ୍ଧ ହେବା କଥା ଶୁଣିବାକ[9] ଚିତ୍ତ । ୬୭୧ ।
ଯେତେ ମନ୍ତ୍ର[10] ତନ୍ତ୍ର କହିଲା ଗୋବନ୍ଧ[11]
ଜ୍ଞାନ ସିଦ୍ଧି ହୋଏ[12] ପାରିଲେ ସେ ସାଧି[13] । ୬୭୨ ।
ଜ୍ଞାନ ତୁ ସାଧିବୁ ନୃପତି ଯେ ସିସ[14]
ତେବେ ତୋର ସିଦ୍ଧ ହୋଇବ ହୋ[15]ବଶ । ୬୭୩ ।
ବ୍ରହ୍ମ ଅନଳରେ ଗ୍ଳାଇ ଯେବେ[16] ପୋଡ଼ି
ଦେହଲରୁ ଯିବ ଜୀବନଟି[17] ଗ୍ଳାଡ଼ି । ୬୭୪ ।
ଅନ୍ତବନ୍ତ କଷ୍ଟେ ଏ[18] ପଥ ଦିଶଇ
ଦେବତାମାନେ ଯେ ନ ପାରନ୍ତି[19] ଯାଇ । ୬୭୫ ।
ଏକ ମନ କରି[20] ଧ୍ୟାଇବୁ ତୁ ବସି
ପଞ୍ଚଆତ୍ମା ତୋର[21] ତହିଁରେ ଯେ ରସି[22] । ୬୭୬ ।

---

୧ ତା (୧)
୨ ପାରିବୁଟି ଝାଇ (୧)
୩ ତେ ସୁଧା (୨)
୪ ଜ୍ଞନ (୨)
୫ ବୋଇଲେ (୨)
୬ ଖାଇବ (୧)
୭ ହୋଇ (୨)
୮ ତୁ ହୋ ଭକ୍ତ (୨)
୯ ଶୁଣିବ ଯେ (୧)
୧୦ ଯେତେ (୧)
୧୧ କହିଲା ଗୋବନ୍ଦ (୧)
୧୨ ହୋଇବ ତା (୧)
୧୩ ଛନ୍ଦ (୧)
୧୪ ଯେବେ ନୃପ ଶିଷ୍ୟ (୧)
୧୫ କାୟା ହୋଇବାକ (୧)
୧୬ ଅନଳେ ଗ୍ଳାଇ ଯିବ ତୋ (୨)
୧୭ ଜୀବ ନଷ୍ଟେ (୧)
୧୮ ଯେ (୨)
୧୯ ପାରିବେ (୨)
୨୦ ମନେ ଭଜି (୨)
୨୧ ଦୃଢ଼େ (୧)
୨୨ ନିବେଶି (୧)

ସୂଚୀ ମୁନେ ତହିଁ ଅଳ୍ପ ଅଛି ବାଟ
ନିଶ୍ଚିନ୍ତରେ ଯାଇ ମତ୍ତଗଜ ଥାଟ । ୬୭୭ ।
ନାସା ପବନ ରଖିଲେ ତହିଁ[୧] ରୁଦ୍ଧି
ତେବେ ମତ୍ତଗଜ ପଡ଼ିବଟି ବନ୍ଧ । ୬୭୮ ।
ଅଗ୍ନି ପାଣି ଏକ କରିବୁଟି ଯେବେ
ଚଉଷଠି ଶନ୍ଦୁକ କରିବେ ତେବେ । ୬୭୯ ।
ଷଷ୍ଠ୍ୟାର ବଷ ହୋଇବଟି[୨] ହତ
ମନ ନିଶ୍ଚଳ କରି କହିଲି[୩] ସତ । ୬୮୦ ।
ମାଛ ଯାଳିଁ ପାଣି ରହିବା'କ ମୂଳେ
ତେବେ ସିନା ଦ୍ୱେର ନ ପଶିବ ଜାଳେ । ୬୮୧ ।
ପବନକୁ ଧରି ମନ ସଙ୍ଗେ ଗ୍ରନ୍ଥି
ଜଳ ଷଟନଧାର ଉଲଟରେ ପଡ଼ି । ୬୮୨ ।
ପଶ୍ଚିମ ଦିଗକୁ ବାନ୍ଧି ଦେଲେ ନାବ
ଯାଇବଟୁ ରନ୍ଧ୍ର ଅଛି ଯେଉଁ ଠାବ । ୬୮୩ ।
ଦେଡ଼ଗୁର ତାକୁ ଭେଟିଲେକ ଯାଇଁ
ବନ୍ଧ ରହିବ ତାର ଅମର ହୋଇ । ୬୮୪ ।
ଭେଟା ଭେଟି ହୋଇ ରହିବାକ[୪] ଯେବେ
ବଢ଼ିଲାର[୫] ନଦୀ ଶୁଖିବଟି ତେବେ । ୬୮୫ ।
ନଦୀ[୬] ଶୁଖିଲେ ହଂସ ଯିବ[୭] ଉଡ଼ି
ଡେଣାରୁ ପକ୍ଷୀ ତା ପକାଇବ କାଢ଼ି[୮] । ୬୮୬ ।
ପକ୍ଷ ଗଲେ କାୟା ନିର୍ମଳ ହୁଅଇ[୯]
ଭ୍ରମର ରହିବ କମଳରେ[୧୦] ଯାଇ । ୬୮୭ ।

---

୧ ନାସିକା ପବନ ରଖିଲେଣ (୨)
୨ ଷଷ୍ଠ୍ୟା ବଷ ସବୁ ହୋଇବ (୧)
୩ କହିବୁ (୨)
୪ ରହିବ ସେ (୨)
୫ ବଢ଼ିବାର (୧)
୬ ନ (୧)
୭ ନ ଯିବ (୧)
୮ ପକ୍ଷୀ ପକାଇବ ଉପାଡ଼ି (୧)
୯ ପକ୍ଷ ଗଲେ ଯେ ନିର୍ମଳ କାୟା ହୋଇ (୧)
୧୦ ଭ୍ରମର ବସେ କମଳ ଘରେ (୧)

ଭ୍ରମର କମଳ ଏକହଟି ଯେବେ[1]
କୃତାନ୍ତକ ଦଣ୍ଡ ଜିଣିବୁ ତୁ[2] ତେବେ । ୬୮୮ ।
ଅଜପା ଜପିଲେ ଶୂନ୍ୟକୁ ହୋ ଜାଣି[3]
ତେବେ ସେ ଶୂନ୍ୟକୁ ବୁଝାଇବୁ[4] ପାଣି । ୬୮୯ ।
ଯେଉଁ[5] ପୁରୁଷକୁ କେହୁ ନୋହେ ସମ
ତାହାକୁ ଦେଖିଲେ କି କରିବ ଯମ[6] । ୬୯୦ ।

ଆଶା ତୁଣ୍ଡାଇ ମାୟା କରିବୁ[7] ନାଶ
ତେବେ ସିନା ରହିବ ପରମ[8] ହଂସ । ୬୯୧ ।
ଅମନ ମଧରେ ଯେ ସ୍ନାନ କରଇ[9]
ଗୁରୁଙ୍କ ବଚନେ ହୃଦଗତେ[10] ଧାଇ । ୬୯୨ ।
ଗୁରୁ ଉପଦେଶ ହୃଦପୁରେ[11] ଧରି
ତେବେ ସିନା ଏଥୁ ହୋଇବାକ[12] ପାରି । ୬୯୩ ।

ତେବେ ସେ ମୁକତ ହୋଇବାକ[13] ପିଣ୍ଡ
ଆଶା ବଳାଇ ଆତ୍ମା ବଢ଼ାଇ ଖଣ୍ଡ । ୬୯୪ ।
କାମ ଦେବର ବାଣ ମନକୁ ଭେଦ
ପଞ୍ଚ ନଗରେ ତା ପାରିଲେକ[14] ଛେଦ । ୬୯୫ ।
ଏବେ ସେ କହିବା ଶୁଣ ହୋ ଗୋବିନ୍ଦ
ଏମନ୍ତ ପ୍ରକାରେ ଦେହକୁ ସେ ଭେଦ । ୬୯୬ ।
ବୃକ୍ଷ ପ୍ରାୟେ ଜାଣ ଏ ଦେହ ରଞ୍ଜନା[15]
ଦେହ ବୃକ୍ଷ ଦୁଇ ଏକ[16] ଭାବ ସିନା । ୬୯୭ ।

---

୧ ଏକତ୍ର ହୋଇବେ (୨)
୨ ଜିଣି ପାରୁ (୨)
୩ ଉଜାଣି (୨)
୪ ଜଟି ସୁଝାଇବୁ (୨)
୫ ଏହୁ (୧)
୬ ତାକୁ ଦେଖି କିସ କରିବଟି ଯମ (୨)
୭ କରିବ (୨)
୮ ତେବେ ହୋ ରହେ ସିନା (୧)
୯ କରାଇ (୨)
୧୦ ପଦ୍ମେ (୧)
୧୧ ଗୁରୁ ଠାରୁ ଉପଦେଶ ହୁଦେ (୨)
୧୨ ହୋଇବୁ ଯେ (୨)
୧୩ ସିନା ମୁକ୍ତ ହୋଇବନ୍ତି (୨)
୧୪ ନାଶ୍ରତ ତାହା ପାରିଲେ (୨)
୧୫ ଦେହର ଚେତନା (୧)
୧୬ ଏହି (୨)

ଦେହ ଧାରଣା ଅଟଇ ତାରମୂଳ[୧]
ଶାଖା ତା ଅଟନ୍ତି[୨] ବ୍ରହ୍ମା ମହେଶ୍ୱର । ୬୯୮ ।
ପୁଷ୍ପ ତାର ସ୍ୱର ଯୁଗ ଯେ ଅଟଇ
ବେନ ଫଳ[୩] ତାର ଚନ୍ଦ୍ର ସୂର୍ଯ୍ୟ ଦୁଇ । ୬୯୯ ।
ଷଡ଼ ଶାଖା ତାର ଷଡ଼ଋତୁ[୪] କହି
ଶୁଣହେ। ଗୋବିନ୍ଦ କହିଲି ମଣାଇଁ । ୭୦୦ ।
ହୃଦରୁ କମଳ[୫] ଉତ୍ପତ୍ତି କରିବୁ
ତହିଁ ରତ୍ନ ସିଂହାସନକୁ[୬] ସ୍ଥାପିବୁ । ୭୦୧ ।
ତହିଁ ପରେ ଜ୍ୟୋତି ଲିଙ୍ଗକୁ ଯେ ସ୍ଥାପ
ଅତସୀ କୁସୁମ ଶ୍ରୀହରିଙ୍କ ରୂପ । ୭୦୨ ।
ଏମନ୍ତ ପ୍ରକାରେ ସାଧିବୁ ତୁ ଯୋଗ
ତେବେ ତୁ ପାଇବୁ ଆତ୍ମତତ୍ତ୍ୱ[୭] ଭୋଗ । ୭୦୩ ।
ପ୍ରଥମ ଓଁକାର ଉଚ୍ଚାର କରିବୁ[୮]
ଶ୍ରୀ ମଧୁସୂଦନ ନାମ ଉଚ୍ଚାରିବୁ[୯] । ୭୦୪ ।
ଜପୁ ମଧୁସୂଦନ ବୋଲିବୁ ଯେବେ
ସମ୍ପୂର୍ଣ୍ଣରେ ମନ୍ତ୍ର[୧୦] ହୋଇବାକ ତେବେ । ୭୦୫ ।
ଯେବେ ତୁ ଜପିବୁ ହୃଦଗତେ ଧରି
ମାଣି କୋଟଠାରୁ ହୋଇବାକ[୧୧] ପାରି । ୭୦୬ ।
ଏହି ଦେହ ଯେନମିବ ନିଜ ଘର
ଶ୍ରୀ ମଧୁସୂଦନ ଜପ ହୃଦପୁର । ୭୦୭ ।
ଜନ୍ମ ଜନ୍ମାନ୍ତରେ ତୁ ମୋର ଭକତ[୧୨]
ତେଣୁ କହିଲି ମୁଁ ଜ୍ଞାନର ଯେ ତତ୍ତ୍ୱ[୧୩] । ୭୦୮ ।

---

୧ ନାରିକାଭ (୨)
୨ ତାର ଅଟେ (୨)
୩ ଫଳ (୨)
୪ ଷଢ ସ୍ୱାଦୁ ଷଢ ଋତୁ କୁ (୨)
୫ ହୃଦ କମଳକୁ (୧)
୬ ନୃସିଂହ ସ୍ଥାନକୁ (୨)
୭ ପରମ ଯେ (୨)
୮ ଉଚ୍ଚାରଣ କରି (୧)
୯ ହୃଦେ ଧରି (୧)
୧୦ ମୁକ୍ତି (୧)
୧୧ ହୋଇବୁ ତୁ (୨)
୧୨ ଅଟୁ ବଡ଼ ଭକ୍ତ (୧)
୧୩ କହିଲି ହେ। ଜ୍ଞାନ ତତ୍ତ୍ୱ (୧)

ପୂର୍ବକୃତ[୧] ପାପ ଥିଲା ତୋର ଦେହେ
ସେ ପାପ ଭୁଞ୍ଜିଲୁ ଥାଇଁ ନିଜ[୨] ଗୃହେ । ୨୦୯ ।
ଏ ଭବ ସଂସାରେ ଜନ୍ମ ମୃତ୍ୟୁ ହୋଇ
ବିନା ଭୋଗେ ପାପ[୩] ପୁଣ୍ୟ ସେ ନ ଯାଇ । ୨୧୦ ।
ପୂର୍ବକୃତ ପାପ ତୋର ଯେତେ ଥିଲା[୪]
ମୋର ଦର୍ଶନେ ସକଳ ନାଶ ଗଲା । ୨୧୧ ।
ଯେଣୁ କଲୁ ରଜା ମୋର[୫] ଭଜନ
ତେଣୁ ଦେହୁଁ[୬] ମୁକ୍ତ ହେଲା ପାପମାନ । ୨୧୨ ।
ଏହି ସ୍ତବ ଯେବା ପଢ଼ିବ ଶୁଣିବ[୭]
ସର୍ବ ପାପ[୮] ନାଶି ମୁକତି ଲଭିବ[୯] । ୨୧୩ ।
ଏ ଦେହ ଅନ୍ତେ ତୁ ବଇକୁଣ୍ଠ ଯିବୁ
ମୋହର ଚରଣରେ ଲୀନ ହୋଇବୁ । ୨୧୪ ।
ଯାଅ ଗୋବର୍ଦ୍ଧନ ତୁ ଯୋଗ କରି ବସ
ଆଜ୍ଞା କରି ପ୍ରଭୁ[୧୦] ହୋଇଲେ ଅଦୃଶ୍ୟ । ୨୧୫ ।
ଅନ୍ତର୍ଦ୍ଧାନ ହେଲେ[୧୧] ଜଗତ ଗୋସାଇଁ
ଭକ୍ତ ଗୋବର୍ଦ୍ଧନଙ୍କୁ ମୋକ୍ଷ ଗତି ଦେଇ । ୨୧୬ ।
ଯୋଗ ଧ୍ୟାନ[୧୨] କଥା ଶ୍ରୀହରି କହିଲେ
ଧରି[୧୩] ଗୋବର୍ଦ୍ଧନ ତା ଯୋଗରେ[୧୪] ବସିଲେ । ୨୧୭ ।
ଅଙ୍ଗ ନ୍ୟାସ କରି ଦୃଢ଼ ବନ୍ଧେ[୧୫] ବଳେ
ଶ୍ରୀ ମୁଖରେ ଯାହା ଆଜ୍ଞା ଦେଇ ଗଲେ[୧୬] । ୨୧୮ ।

---

୧ କଲ୍ଲ (୨)
୨ ବଳ (୧)
୩ ଭୋଗ ଯୋଗ (୨)
୪ ଦେହେ ତୋର ଥିଲା (୧)
୫ ଅନେକ ଯେ କଲୁ ମୋହର (୨)
୬ ଧରି (୧)
୭ ଏବେ ଏ ସ୍ତୁତି ପଢିବେ ଶୁଣିବେ (୨)
୮ ଦୁଃଖ (୧)
୯ ଲଭିବେ (୨)
୧୦ ଏତେ ଆଜ୍ଞା ଦେଇ (୨)
୧୧ ହୋଇ (୨)
୧୨ ସାଧ (୨)
୧୩ ମନେ ଧରି (୧)
୧୪ ଯୋଗରେ (୨)
୧୫ କରି ନ୍ୟାସ ଦୃଢ଼େ (୧)
୧୬ ବାନ୍ଧି ଦେଇ ଥିଲେ (୨)

କେହ୍ନ ପାଦ ନେଇ ଯାନୁ ପରେ ଛଢ
କେହ୍ନ ଭୂଜ କୋଟି ଖଗେ[୧] ଦେଇ ବାନ୍ଧି । ୭୧୯ ।
କେହ୍ନ ଚକ୍ଷୁ ଦେଲ୍ଲ ନାଶାର ଅଗ୍ରତେ[୨]
ନାଶାର ପବନ କଲ୍ଲ[୩] ଊର୍ଦ୍ଧ୍ୱଗତେ । ୭୨୦ ।
ହୃଦପ୍ଦ କନକେ କମଲ ସ୍ଥାପିଲ୍ଲ[୪]
ତହିଁରେ ଆସନ ନିଶ୍ଚଳେ ରଖିଲ୍ଲ[୫] । ୭୨୧ ।
ମଢା ମନ୍ତ୍ର ସ୍ମରି ଜପରେ ବସିଲ୍ଲ[୭]
ଶ୍ରୀ ମଧୁସୂଦନ ମନ୍ତ୍ର ଆରମ୍ଭିଲ୍ଲ[୮] । ୭୨୨ ।
ମାଣି କୋଠ ଘର ଅନ୍ଧାର ହୋଇଲ୍ଲ
ବାହାର ଭିତରେ କିଛି ନ ଦିଶିଲ୍ଲ । ୭୨୩ ।
ବର୍ଷ କାଳେ ମେଘ ଯେହ୍ନେ[୯] ବୃଷ୍ଟି କଂର
ଗର୍ଜନ ଶୁଭିଲ୍ଲ ମଢା[୧୦] ଉପୂଙ୍କରେ । ୭୨୪ ।
ଘୋର ଅନ୍ଧକାର ପୃଥ୍ୱି ଅସମାନେ[୧୧]
କିଛି ନ ଦିଶିଲ୍ଲ ବସନ୍ତେ ଆସନେ[୧୨] । ୭୨୫ ।
ସପ୍ତଦିନ ସପ୍ତ ରାତ୍ର ଜପ କଲେ
ଲକ୍ଷ୍ମୀ ନାରାୟଣ ମନରେ[୧୩] ଜାଣିଲେ । ୭୨୬ ।
ଦୂତଙ୍କୁ ଡ଼ାକଣ ହରି[୧୪] ଆଜ୍ଞା ଦେଲେ
ଉଦ୍ଧବର ଯେହ୍ନ ଯାଅ ହୋ ବୋଇଲେ । ୭୨୭ ।
ମାଣିକୋଠେ[୧୫] ଭକ୍ତ ବନ୍ଧରେ ଅଛଇ
ସେ ଠାବରୁ ତାକୁ ଗୃହେ ଆସ ଥୋଇ । ୭୨୮ ।
ବିଷ୍ଣୁ ଦୂତେ ଉଦ୍ଧବର ଯେନଗଲେ
ମାଣିକୋଠେ ଯାଇ[୧୬] ପ୍ରବେଶ ହୋଇଲେ । ୭୨୯ ।

---

୧ କେନକଟି ଭଗେ ଭ୍ରସ (୧)
୨ କେନ ଚକ୍ଷୁ ଦେଇ ଦେଲ୍ଲ ନାଶାଗ୍ରତେ (୧)
୩ ରଖି (୧)
୪ ସ୍ଥାପିଲେ (୧)
୫ ରଖିଲେ (୧)
୬ ମଢ (୨)
୭ ବସିଲେ (୧)
୮ ଆରମ୍ଭିଲେ (୧)
୯ ଘୋର (୨)
୧୦ ଅଢ (୨)
୧୧ ଆକାଶ ସମାନ (୧)
୧୨ ଆସନ (୧)
୧୩ ତାହାସେ (୨)
୧୪ ଦୂତ ମାନଙ୍କରେ (୨)
୧୫ ମାଣିକୋଠ (୧)
୧୬ ମାଣିକୋଠଠାରେ (୨)

ଆସନୁ ଉଠାଇ ବିମାନେ ବସାଇ
ଘେନିଗଲେ ଦୂତେ ରାଜା ନ ଜାଣଇ ।୭୩୦।
ଯୋଗାସନେ ଥିଲା ଗୋବିନ୍ଦ[1] ରାଜନ
ଶ୍ରୀ ହରି ଚରଣେ ଦୃଢ଼େ[2] ଥିଲା ମନ ।୭୩୧।
ଗଡ଼ ଦ୍ୱାର ଠାରେ ପ୍ରବେଶିବେ ଯାଇଁ[3]
ଭଞ୍ଜ ଗୋବିନ୍ଦ ତା କିଛି ନ ଜାଣଇ[4] ।୭୩୨।
ଦେବତା ମାୟା କି ମାନବେ ଜାଣିବେ
ମୋହ ଲଗାଇଲେ ମୋହିତ ହୋଇବେ[5] ।୭୩୩।
ଯେତେବେଳେ ବସ୍ତୁ ଦୂତେ ଘେନଗଲେ
ମୋହ ମାୟା ସେ ଠାବରେ ଆଚ୍ଛାଦିଲେ[6] ।୭୩୪।
ସ୍ୱପ୍ନ ମଧ୍ୟରେ ନେଇ ତା ଥୋଇଲେ
ଦୁଇ ପାଟରାଣୀ ଶୟନରେ[7] ଥିଲେ ।୭୩୫।
ପଲଙ୍କ ଉପରେ ରାଜାକୁ[8] ଥୋଇଲେ
ଶୟନ କରାଇ ଦୂତେ ଚାଲି[9] ଗଲେ ।୭୩୬।
ନିଦ୍ରାଗତେ ରାଜା ଅଚେତନେ ଥାଇ
ଶ୍ରୀ ହରିଙ୍କ ଲୀଳା କିଛି ନ ଜାଣଇଁ ।୭୩୭।
ଭଞ୍ଜ ଗୋବିନ୍ଦ ଗୃହରେ ରହିଲା[10]
ରାଜ ବୃଦ୍ଧ ଦଣ୍ଡ ଶେଷ ପୂର୍ଣ୍ଣ ଥିଲା[11] ।୭୩୮।
ରଥବର ଘେନ ଦୂତେ ଚାଲିଗଲେ[12]
ବଇକୁଣ୍ଠେ ଯାଇଁ ପ୍ରବେଶ ହୋଇଲେ ।୭୪୯।
ସେହି କ୍ଷଣି ରାଜ ଅବଶେଷ ହେଲା[13]
ଆକାଶେ ଦିନକର ଉଦୟେ ହୋଇଲା[14] ।୭୪୦।

---

୧ ଯୋଗ ଆସନେ ବସିଥିଲା (୧)
୨ ତାର (୨)
୩ ଦ୍ୱାରେ ତାକୁ ପ୍ରବେଶିଲେ ନେଇ(୨)
୪ କୁ କଛ ଜଣା ନାହିଁ (୧)
୫ ମାୟା ଲଗାଇଣ ମୋହ କରାଇବେ(୨,
୬ ଯେତେବେଳେ ଦୂତେ ସେଠ.କରୁ ନେଲେ । ମାୟା ଅଚ୍ଛାଦନ ସେଠାବରେ କଲେ (୧)
୭ ଯହିଁ ଶୋଇ (୧)
୮ ନେଇଣ (୧)
୯ ଛାଡ଼ି କରି (୨)
୧୦ ନିଜ ଘରେ ରହିଲେ (୧).
୧୧ ରାଜ ଅଉ ଦୁଇ ଘୃଡ଼ି ଦଣ୍ଡ ଥିଲା(୨)
୧୨ ବାହୁଡାଇ ନେଲେ (୨)
୧୩ ପ୍ରକାଶ ହୋଇଲା (୧)
୧୪ ପୂର୍ବ ଦିଗେ ଦିନକର ଉଦେ ହେଲା(୧)

ବାୟସ କକ୍‌କୁଠ କଣ୍ଠସ୍ୱର ଦେଲେ
ଦାସୀମାନେ ଆସି ଗୃହେ ସମାର୍ଜିଲେ ।୭୪୧।
ଦୁଇ ରାଣୀ ନିଦ୍ରା ତେଜଣ ଉଠିଲେ[1]
ପଲଙ୍କରେ ଛନ୍ତି[2] ରଜାଙ୍କୁ ଦେଖିଲେ ।୭୪୨।
ଦେଖି ତୋଷ ହେଲେ[3] ଦୁଇ ରାଣୀ
ଚମତ୍କାର ଲାଗିଲାକ ମନେ ପୁଣି[4] ।୭୪୩।
ସଚେତ କରାଇ[5] ପଲଙ୍କରୁ ତୋଳି
ଜଳ ମୁଖେ ଦେଇ ପଚ୍ଚରନ୍ତି ବାଳୀ ।୭୪୪।
ଆନନ୍ଦରେ ରାଜା ଅତି ତୋଷ[6] ହୋଇ
ହଜିଲା ନିଧିକ ଦରିଦ୍ର ଲଭଇ ।୭୪୫।
ନିଦ୍ରାଗତେ ସ୍ୱପ୍ନ ଯେହ୍ନେ ଭ୍ରାନ୍ତ ଜନେ[7]
ନିଦ୍ରାଭଙ୍ଗେ[8] ରାଜା ଚେତଇ ସେ ମନେ[9] ।୭୪୬।
ଅସମ୍ଭବ ରାଜା ଚେତିଲେ ଯେ ମନେ[10]
ମୋର[11] ଦୁଃଖ ନାଶ କଲେ[12] ଭଗବାନେ ।୭୪୭।
ତ୍ରୈଲୋକ୍ୟର ନାଥ ମୋତେ ଦୟା[13] କଲେ
ମାଣିକୋଟ ଠାରୁ ଉଦ୍ଧରି ଆଣିଲେ ।୭୪୮।
କୃପାସିନ୍ଧୁ ନାମ ଜଗତେ ପ୍ରକାଶ
ସଦୟେ ହୋଇଣ[14] ଦୁଃଖ କଲେ ନାଶ ।୭୪୯।
ଜଗତ ସୋଦର ଦୀନ[15] ଜନବନ୍ଧୁ
ଦୁଃଖୀ[16] ଜନବନ୍ଧୁ କୃପାମୟ ସିନ୍ଧୁ ।୭୫୦।

---

୧ ଦୁଇ ରାଣୀଙ୍କର ନିଦ୍ରା ଭଙ୍ଗ ହେଲେ (୨)
୨ ପଲଙ୍କେ ଶୋଇବା (୧)
୩ ଦେଖିଣ ହରଷ (୧)
୪ ହେଲେ ମନେ ମନେ ଗୁଣି (୨)
୫ ରାଜାଙ୍କୁ ଉଠାଇ (୧)
୬ ଉତ୍ସାହିତ (୧)
୭ ସ୍ୱପ୍ନ ଦେଖାଇ ଭୋଜନ (୨)
୮ ଗତେ (୧)
୯ ତା ମନେ (୧)
୧୦ ହୋଇ ରାଜା ଚେତ ମନେ (୧)
୧୧ ମୋହ (୨)
୧୨ ପ୍ରଭୁ (୨)
୧୩ ଦୟା ମୋତେ (୨)
୧୪ ଦୟା କର ମୋର (୧)
୧୫ ଦୁଃଖୀ (୧)
୧୬ ଦୀନ (୧)

ଆରତ ଭଞ୍ଜନ ଜଗତ ସୋଦର
ଦୁଃଖି ଜନ ବନ୍ଧୁ କରୁଣା ସାଗର[1] ।୭୫୧।
ଆରତ ଭଞ୍ଜନ[2] ଯଶୋଦାଙ୍କ ବଳା
ଭବ ସାଗରୁ ଉଦ୍ଧରିଲ ମୋ ଭେଳା ।୭୫୨।
ନମସ୍ତେ ନମସ୍ତେ ଦେବ[3] ଦାମୋଦର
ନମସ୍ତେ ନମସ୍ତେ ଶଙ୍ଖ[4] ଚକ୍ରଧର ।୭୫୩।
ନମସ୍ତେ ନମସ୍ତେ[5] ଲକ୍ଷ୍ମୀଙ୍କ ବଲ୍ଲଭ
ନମସ୍ତେ ନମସ୍ତେ[5] ଗୋପର ସୁଲଭ[6] ।୭୫୪।
ନମସ୍ତେ ନମସ୍ତେ ଜଗତ କରତା
ନମସ୍ତେ ନମସ୍ତେ କଂସାସୁର ହର୍ତ୍ତା[7] ।୭୫୫।
ନମସ୍ତେ ଶ୍ରୀରାମ ରାବଣ ମର୍ଦ୍ଦନ[8]
ନମସ୍ତେ ନମସ୍ତେ ଦେବ ଭଗବାନ ।୭୫୬।
ଦ୍ରୌପଦୀ ଆରତ କର୍ଣ୍ଣରେ ଶୁଣିଲ
କୋଟି ବସ୍ତ୍ର ଦେଇ ଲଜ୍ଜା ନିବାରିଲ ।୭୫୭।
ନମସ୍ତେ ଶ୍ରୀହରି ଗଜକୁ ରଖିଲ
ଗ୍ରାହାକୁ[9] ନେବ ରି ବୈକୁଣ୍ଠ ପେଷିଲ ।୭୫୮।
ନମସ୍ତେ ଶ୍ରୀକୃଷ୍ଣ[10] ସାଲୁର ଅରରି
ଶିଶୁ-ପାଳ ନାଶି ପାରିଜାତ ହରି[11] ।୭୫୯।
ନମସ୍ତେ ଶ୍ରୀକୃଷ୍ଣ ଗୋବର୍ଦ୍ଧନ ଧାରୀ
ଗୋପକୁ ରଖିଲ ଇନ୍ଦ୍ର ଦର୍ପ ହରି ।୭୬୦।
ଅନନ୍ତ କେଶବ ହରି[12] ଚକ୍ରଧର
ଅଜାମିଳ ବିପ୍ରକୁ କଲ ଉଦ୍ଧାର ।୭୬୧।

---

୧ ପଦ (୭୫୧) (୨)ୟୁ ପୋଥିରେ ହିଁ ଅଛି
୨ ନାଶନ (୧)
୩ ରାମ କୃଷ୍ଣ (୧)
୪ ପ୍ରଭୁ (୧)
୫ ଶ୍ରୀହରି (୧)
୬ ଶ୍ରୀକୃଷ୍ଣ ଗୋପର ଦୁର୍ଲ୍ଲଭ (୧)
୭ ନମସ୍ତେ କଂସାସୁର ଦର୍ପ ହରନ୍ତା (୧)
୮ ନାଶନ (୧)
୯ ଗ୍ରାହା (୧)
୧୦ ନମସ୍ତେ (୨)
୧୧ ଦେବ ଦଇତାରି (୨)
୧୨ ଦେବ (୨)
୧୩ ନାରାୟଣ ଅଜାମିଳ ହେ ଉଧାର (୨)

ଗୋବନ୍ଦ ଗୋପୀନାଥ ହେ ନନ୍ଦସୁତ[୧]
ମୁରାରି ମୁକୁନ୍ଦ ବାସୁଦେବାଚ୍ୟୁତ[୨] ।୭୬୨।
ମଧୁସୂଦନ କୃପାସିନ୍ଧୁ[୩] ବାମନ
ମାଧବ ମୁକୁନ୍ଦ ନନ୍ଦର ନନ୍ଦନ[୪] ।୭୬୩।
ବଳି ଧ୍ୱଂସୀ ଜନାର୍ଦ୍ଦନ ହେ[୫] ଈଶ୍ୱର
ମୁକ୍ତି ଦାତାହରି[୬] ଯଶୋଦା କୁମର ।୭୬୪।
ସିଦ୍ଧ ଅଖିଳ-ନାଥ ମଧୁସୂଦନ
ନରସିଂହ ନରହରି ନନ୍ଦନାନ ।୭୬୫।
ବୈକୁଣ୍ଠ ପରମାନନ୍ଦ ନାରାୟଣ
ପୀତବାସ ମହା ରୁକ୍ମିଣୀ ରମଣ ।୭୬୬।
ଗଦା ପାଣି ସଦା ଗରୁଡ଼ ଆସନ[୭]
ପଦ୍ମନାଭ ବୃନ୍ଦାବନ ବିଶ୍ୱକ୍‌ସେନ[୮] ।୭୬୭।
ବଳାରି ସନାତନ ବିଶ୍ୱ ମୂରତି[୯]
ପୂତନା ନିବାରି[୧୦] ଦେବ ଲକ୍ଷ୍ମୀ ପତି ।୭୬୮।
ରଘୁବୀର ରଘୁନାଥ ରଘୁନାନ[୧୧]
କଣ୍ଠୀକେଶୀ ଦୁଷ୍ଟ ଦଇତ ନାଶନ[୧୨] ।୭୬୯।
ଶଙ୍କଟ ଭଞ୍ଜନ ବତ୍ସାସୁର[୧୩] ମାରି
କ୍ଷୀର ସିନ୍ଧୁଶାୟୀ ଅନନ୍ତ ମୁରାରି ।୭୭୦।
ପ୍ରହଲ୍ଲାଦ ରକ୍ଷି ହିରଣ୍ୟ ବଦାରି[୧୪]
ବାଳ ବିନାଶନ[୧୫] ଅସୁର[୧୬] ଅରିଶ ।୭୭୧।

---

୧ ନବସ୍ତୁତେ (୨)
୨ ବାସୁଦେବ ହେ ଅଚ୍ୟୁତ (୨)
୩ ମଧୁସୂଦନ କୃପାଳୁ ହେ (୧)
୪ ପୁଣ୍ଡରୀକାକ୍ଷ ମାଧବ ନନ୍ଦନାନ (୧)
୫ ଜନାର୍ଦ୍ଦନ ବଳୀଧ୍ୱଂସୀ ଜଗତ (୨)
୬ ଦଇତାସୀ ମୁକ୍ତି ଦାତା (୨)
୭ ଗଦା ପାଣି ଗୋବର୍ଦ୍ଧନ ଗରୁଡ଼
ବାହାନ (୨)
୮ ବୃନ୍ଦାବନ ଦେବ ବିଷ୍ୱକ୍‌ସେନାନେନାନ୍ତ (୨)
୯ ଉପେନ୍ଦ୍ର ବଳାରି ବିଶ୍ୱମୂର୍ତ୍ତି (୨)
୧୦ ପୂତନାରି ତ୍ରିବିକ୍ରମ (୨)
୧୧ ରଘୁନାଥ ରଘୁବୀର ଶ୍ରୀରଘୁନନ୍ଦନ (୨)
୧୨ ବାମନ କେଶବ ରାମ ପଦ୍ମ
ଜନାର୍ଦ୍ଦନ (୨)
୧୩ ବତ୍ସାସୁରାରି (୨)
୧୪ ରକ୍ଷାକାରିହିରଣ୍ୟ ନିବାରି (୨)
୧୫ ବିଧ୍ୱଂସନ (୧)
୧୬ ଝରର (୧)

ମତ୍ସ୍ୟ କୂର୍ମ[୧] ପରଶୁରାମ ଅବତାର
ଯୋଗେଶ୍ୱର[୨] ନାଥ[୩] କରୁଣା ସାଗର ।୭୭୨।

ନିରାକାର ଅନ୍ତର୍ଯ୍ୟାମୀ[୪] ନିରଞ୍ଜନ
ଭକତ ଜନଙ୍କ ଦୁର୍ଗତି ନାଶନ[୫] ।୭୭୩।

ନାରାୟଣ ଜଗନ୍ନାଥ ଦଇତାରି
ମାଣିକୋଠ କଷ୍ଟ[୬] କ୍ଷଣକେ ନିବାରି ।୭୭୪।

ଦର୍ଶନ ଦେଇତା ଜ୍ଞାନ[୭] ଦେଲେ ମୋତେ
ମନ୍ତ୍ର ଯନ୍ତ୍ର ବୁଦ୍ଧି[୮] କରି ଦେଲେ ମୋତେ ।୭୭୫।

ସେହି ରୂପେ ପ୍ରଭୁ[୯] ଜପ ମୁଁ କଲଇଁ[୧୦]
ସପ୍ତ ଦିନ ରାତ୍ର ମାଣିଠାରେ ରହି[୧୧] ।୭୭୬।

ଦୁର୍ଗମ ଯାତନା ନାଶିଲ[୧୨] ମୋହର
ଜନ୍ମେ ଜନ୍ମେ ଦୟା ଥିବ[୧୩] ଚକ୍ରଧର ।୭୭୭।

ଏଭବେ[୧୪] ଗୋବିନ୍ଦ କଲ ବହୁସ୍ତୁତି
ଶୁଣି ତାହା ତୋଷୀ ହେଲେ[୧୫] ଲକ୍ଷ୍ମୀ ପତି ।୭୭୮।

ଗୋବିନ୍ଦ ଭକ୍ତିରେ[୧୬] ତୋଷ ହୋଇ ହରି
ପ୍ରସନ୍ନରେ[୧୭] ବର ଦେଲେ ଦଇତାରି ।୭୭୯।

ଅବଶ୍ୟ ହୋଇବ ମନ ବାଞ୍ଛାପୂର୍ଣ୍ଣ[୧୮]
ରାଜନ ଗୋବିନ୍ଦ ମୋର ଭକ୍ତ ଜାଣ[୧୯] ।୭୮୦।

---

୧ କୂର୍ମ ରୂପ (୨)
୨ ଯକ୍ଷସୁର (୧)
୩ ଜଗନ୍ନାଥ (୧)
୪ ଅନ୍ତର୍ଯ୍ୟାମୀ ଦେବ (୨)
୫ ନାଥ ଦ୍ରୋହଛି ତାରଣ (୨)
୬ କଷ୍ଟ ପ୍ରଭୁ (୨)
୭ ପ୍ରଭୁ ଅଜ୍ଞା (୧)
୮ ବିଧିପତ (୨)
୯ ମହା ପ୍ରଭୁ (୨)
୧୦ କରଇଁ (୨)
୧୧ ଥାଇ (୨)
୧୨ ପ୍ରଭୁ ନାଶିଲେ (୨)
୧୩ ଥିବ ମୋତେ (୨)
୧୪ ଏଣୁ ଫଟେ (୨)
୧୫ ହେଲେ ଦେବ (୨)
୧୬ ଗୋବିନ୍ଦର ଭାବେ (୨)
୧୭ ପ୍ରସନ୍ନ ହୋଇଣ (୨)
୧୮ ବାଞ୍ଛା ତୋର ପୂର୍ଣ୍ଣ (୨)
୧୯ ଭଞ୍ଜ ଗୋବିନ୍ଦ ମୋର ନିଜ ଭକ୍ତ ଜନ (୨)

ପୁଣି ପାଦେ ପଡ଼ି ବୋଲଇ ବଚନ
ମନୁଷ୍ୟରେ ଜନ୍ମ[1] ପାପିଷ୍ଠ ରାଜନ । ୭୮୧ ।
ହରି[2] ପାଦ ପଦ୍ମେ ସେବା କରିନାହିଁ
ଗୋବିନ୍ଦ ଦର୍ଶନ ପାଇଲି ଯେ[3] ମୁହିଁ । ୭୮୨ ।
ଶ୍ରୀ ପଦ୍ମ ଚରଣ[4] ଦେଖିଲି ପ୍ରତ୍ୟକ୍ଷ
କୋଟି ଜନ୍ମ ପାପ ନାଶି ହେଲି[5] ମୋକ୍ଷ । ୭୮୩ ।
ଏହିଭଳି ଦୟା ଥିବ[6] ଚକ୍ରଧର
ଜନ୍ମେ ଜନ୍ମେ ପଦେ ହୋଇବି କିଙ୍କର[7] ।୭୮୪।
ନୃପତି ଲୋଚନ ମୁଦି[8] ସ୍ମରି ମନେ
ସେତେ ସ୍ତୁତି କଲା[9] ଥାଇ ବନ୍ଧ[10] ସ୍ଥାନେ । ୭୮୫ ।
ସ୍ତୁତି ମାନଙ୍କର ରାଜା ହେଉ ପୁଣ
ଶ୍ରୀ ଚରଣ[11] ସୁଧାନିଧି ଏହୁ[12] ନାମ । ୭୮୬ ।
ସୁଧାନିଧି ସ୍ତବ ଯେ[13] ପଢ଼ି ଶୁଣିବେ
ପ୍ରଭୁ ଚରଣେ[14] ଚିତ୍ତ ନିଷ୍ଠଳେ[15] ଦେବେ । ୭୮୭ ।
ମନ ବାଞ୍ଛା ସିଦ୍ଧି ଅବଶ୍ୟ ହୋଇବ
ସର୍ବ ପାପ ନାଶି ମୁକତି ଲଭିବ[16] । ୭୮୮ ।
ଶ୍ରୀ ଚରଣ ଅଗ୍ରେ ଯେ ଜନ କରନ୍ତି
ସଂସାର ସମୁଦ୍ର ହେଲେ ସେ ତରନ୍ତି । ୭୮୯ ।
ଶ୍ରୀ ଚରଣେ ଆଶ୍ରା କଲା ହନୁମାନ
ତୃଣ ପ୍ରାୟ ମଣେ ରାବଣର ସୈନ୍ୟ । ୭୯୦ ।

---

୧ ମନୁଷ୍ୟ ଜନ୍ମିଛି ମୁହିଁ (୨)
୨ ଶ୍ରୀହରିର (୨)
୩ ଗୋପୀନାଥ ଦର୍ଶନ ଯେ ପାଇଲଇଁ (୨)
୪ ଚରଣ ମୁଁ ଯେ (୨)
୫ ହୋଇଲି ମୁଁ (୨)
୬ ଥିବ ମୋତେ (୨)
୭ ତୁମ୍ଭ ପାଦେ ମୁଁ ଜନ୍ମେ ଜନ୍ମେ କିଙ୍କର (୧)
୮ ସ୍ତୁତି ଶୁଣି (୨)
୯ କରି (୨)
୧୦ ବନ୍ଦିରେ ଯେ (୨)
୧୧ ଚରଣ (୨)
୧୨ ବୋଲି ଏହାର (୨)
୧୩ ଯେହୁ (୨)
୧୪ ମୋହୋର (୨)
୧୫ ନିଷ୍ଠଳେ ସେ (୨)
୧୬ ମନ ନିଷ୍ଠଳ କରିଣ ସେ ମୋତେ ଧ୍ୟାଇବେ ଅବଶେଷେ ମନ ବାଞ୍ଛା ସମ୍ପୂର୍ଣ୍ଣେ ଲଭିବେ (୨)

ଶ୍ରୀ ଚରଣ ଆଶ୍ରାକର ସୁଜ୍ଞ ଜନ
ଚରଣ ଧ୍ୟାଇଲେ କଟା ଦୁଃଖ ମାନ । ୭୯୧ ।
ଚରଣକୁ ଆଶ୍ରା ଗୋପୀମାନେ କଲେ
ଗୋପୀ ଗୋଷ୍ଠଙ୍କର ନନ୍ଦନ ହୋଇଲେ । ୭୯୨ ।
ଭବକୁ ନିକଟ ଚରଣ ପ୍ରାପତ
ଭବରେ ବ୍ରାହ୍ମଣୀ ଦେଖିଲେ ତ ନେତ୍ର । ୭୯୩ ।
ଭବ ତ୍ରାହିନାଥ ଚରଣ ମହିମା
ଭବରେ ପାଣ୍ଡବ ରଖାଇଲେ ସୀମା । ୭୯୪ ।
ଚରଣକୁ ଆଶ୍ରା କଲେକ ବିଦୁର
ମନ ବାଞ୍ଛା ପୂର୍ଣ୍ଣ କଲେ ଚକ୍ରଧର । ୭୯୫ ।
ଚରଣ ମହିମା କେ ଅବା କହିବ
ବ୍ରହ୍ମା ବାସୁକୀ ଯେ ଆଦି ସଦାଶିବ । ୭୯୬ ।
ମୁଁ କ୍ଷୁଦ୍ର ମାନବ ମୋର ବୁଦ୍ଧି କେତେ
ଅନ୍ତ ନପାଇଲେ ଋଷି ଆଦି ଯେତେ । ୭୯୭ ।
ମାନବ ଯୋନିରେ ଜନମ ହୋଇଲି
ମୋହ ମଦରେ ଚରଣ ନ ଚିହ୍ନିଲି । ୭୯୮ ।
ଶ୍ରୀ ଚରଣେ ଶୋଭା ଅଷ୍ଟଦଶ ଚିହ୍ନ
ଚକ୍ର ଅମ୍ବୁଜ ଅଷ୍ଟ କଣିକା ମୀନ । ୭୯୯ ।
ଜବ ଛତ୍ର ରେଖା ଶଂଖ ସ୍ୱପଇନ୍ଦୁ
ବଜ୍ରାଙ୍କୁଶ ଧ୍ୱଜ ଅମ୍ବୁଫଳ ବିନ୍ଦୁ । ୮୦୦ ।
ତ୍ରିକୋଣ କଳଶ ଗୋଷ୍ପଦ ଚରଣ
ଭଞ୍ଜ ଗୋବିନ୍ଦ ସେ ଚରଣେ ଶରଣ । ୮୦୧ ।

# ପରିଶିଷ୍ଟ

| ଗୃହୀତ ପାଠର ପଦ କ୍ରମରେ ସ୍ଥାନ | ଗୃହୀତ ନ ହୋଇଥିବା ପାଠ | ପୁସ୍ତକ ବା ପୋଥି କ୍ରମ |
|---|---|---|
| ୫୫ – ୫୬ | ଲଙ୍କା ଡେଇଁ ପଶେ ପବନ କୁମର<br>ମନେ ବଗୃରଇ ଅସୁରଙ୍କ ପୁର । | (୧) ପୁସ୍ତକ |
| ୭୯ – ୮୦ | ମଧୁବନେ ପଶି ଫଳମୂଳ ଖାଅ<br>ମୋର ସନ୍ଦେଶ ଠାକୁରଙ୍କୁ ଜଣାଅ । | (୧) |
| ୮୩ – ୮୪ | ଆଜ୍ଞା ପାଇଣ ହନୁମାନ ଚଳିଲା<br>ଚରଣ ଧୂଳି ଶିରେ ବୋଳି ହୋଇଲା ।<br>ମଧୁବନେ ଫଳମୂଳ ସେ ଭକ୍ଷିଲା<br>ହୋଣା କାଠ ଝମ୍ପ ଉପରେ ବସିଲା । | (୧) |
| ୯୨ – ୯୩ | ଅକ୍ଷପ୍ରମୂଳେ ଅସୁରନ୍ତ ମାଇଲା<br>ଇନ୍ଦ୍ରଜିତ ହାତେ ବନ୍ଧନ ପଡ଼ିଲା । | (୧) |
| ୧୦୧ – ୧୦୨ | ବୈଶ୍ୱାନର ମନେ ଭୟ କଲା ତାକୁ<br>ହନୁମନ୍ତ ଗୃହେଁ ଅଗ୍ନି ଦେବତାକୁ ।<br>ଅଗ୍ନି ଦେବଙ୍କୁ ହନୁମାନ ଗୃହିଁଲା<br>ବ୍ରହ୍ମ ଅଗ୍ନି କପାଳରୁ ଜାତ କଲା । | (୧) |
| ୧୦୪ -- ୧୦୫ | ଲଙ୍କାଗଡ଼ ଦହି ପବନର ବଳା<br>ସିନ୍ଧୁ ସାତକୁ ସେ ହେଳେ ଲଙ୍ଘିଲା ।<br>ଶ୍ରୀରାମ ସମ୍ମୁଖରେ ମିଳିଲାକ ଯାଇଁ<br>କର ପଦ ଯୋଡ଼ି କଥା ସେ କହଇ ।<br>ଶୁଣି ସାନନ୍ଦ ହୋଇଲେ ରଘୁସାଇଁ<br>ହନୁମାନଙ୍କୁ କୋଳେ ନେଇ ବସାଇ । | (୧) |

୧୩୦—୧୩୧ କରେ କଂକଣ କଟିରେ ପିତବାସ
ନୀଳ ମେଘେ ଯେହ୍ନେ ବିଜୁଳୀ ପ୍ରକାଶ । (୨) ପୂର୍ବକ
ଶ୍ରୀ ପଦ୍ମ ଚରଣେ ନୂପୁର ବାଜେ
ବ୍ରହ୍ମା ଆଦି ଦେବ ଯାହାଙ୍କୁ ସେ ଭଜେ । (୨)
ତ୍ରୀଭଙ୍ଗୀ ମୁରଲି ଅଧରେ ସୋହସେ
ତ୍ରୀଭଙ୍ଗି ମୂରତି ମୋହନ ସୁବେସେ । (୨)
ଯେଉଁ ପାଦପଦ୍ମେ ଘୁଞ୍ଚେ ଭବବ୍ୟଥା
ସୁବିବେକ ବୁଧି ସେ ହରି ଦିଅନ୍ତି । (୨)
ଯଦୁ ବଂଶରେ ସେ ହୋଇଣ ସମ୍ଭୂତ
ଚରଣ ଦେଖିଣ ତରିଲେ ଯଗତ । (୨)
ଦେବକୀଙ୍କ ଗର୍ଭେ ବସୁଦେବ କୋଳେ
ଯାତ ହୋଇଲେ ସେ ଦାନବଙ୍କ ଛଳେ । (୨)
ଗୋପ ନଗରେ ଗୋପି ସଦନେ ମିଳି
ଶ୍ରୀ ପଦ୍ମ ଚରଣ ମରଦ୍ଦିଲେ କାଳି । (୨)
ପୂତନାଦି ଅଷ୍ଟମାଳନ୍ତ ସେନାସୀ
ସଣ୍ଢା ଧେନୁକା ପ୍ରଲମ୍ବାକେସୀ ଧ୍ୱଂସୀ । (୨)
ବସ୍ତ୍ର ଧେନୁକା ଶୋଣାବ୍ରତକ ଆଦି
ବଧ କଲେ ତତ୍ୱଂ ସୀଦସ ତବାଢ଼ି । (୨)
ସିସୁବୃନ୍ଦ ବସ୍ତ୍ର ଧେନ୍ମଣ ବିହରି
ଯମୁନାଷ୍ଟରେ ସେ ବନରେ ବିହରି । (୨)
ଅଯାଗେ ହରିଲେ ଗୋପିଙ୍କର ମତି
କୋଟିଏ ଲାବନ୍ୟ ମୋହନ ମୂରତି । (୨)
ଗୋବିନ୍ଦ ପାଦର ସତବ୍ରଜ ଯୁଗଳ
ଭକ୍ତି ଗୋବିନ୍ଦର ହୃଦୟ ମଣ୍ଡଳ । (୨)
ପ୍ରଳୟ ଜଳରେ ମିନ ରୂପ ଧରି
ସଖା ନାମେ ଦୈତ୍ୟ ହେଲେଣ ସଂହରି । (୨)
ବେଦ ଉଧରିଣ ବିଧାତାକୁ ଦେଲେ
ଧନ୍ୟ ସେ ବିଧାତା ଚରଣ ଦେଖିଲେ । (୨)

ବାହ୍ମ କାଳୁ ଗଙ୍ଗା କମଣ୍ଡଳେ ସଞ୍ଚି
ବେଳଳ୍ପ ଚରଣେ ହର ସେ ବରଞ୍ଚି । (୨)
ପାଦ ତଳୁ ଗଙ୍ଗା ନଦୀ ବହି ଯାଇ
ନଖକୋଣେ ଜଳ ବନ୍ଦୁ ପ୍ରାଏ ରହି । (୨)
ଚରଣ ଝଳରେ ଯେଉଁ ଶୁଭ ନଦ
ନାମ ଯେ ହେ ଇଲ୍ପ ଗଙ୍ଗା ବିଷ୍ଣୁ ପଦ । (୨)
ବଳଭଦ୍ର ରୂପ ଚନ୍ଦ୍ର କ୍ଷିଣିକାନ୍ତି
କୋଟି ନାଳଦ ସସନା ଜଳଭ୍ରାନ୍ତି । (୨)
ଜ ଦେମ୍ବର ପାନେ ଘୂମତ ନପୂକ
ଓ୍ଁ କନ୍ତ୍ର ଯମୁନା ଆସ ଭୁ ବହନ । (୨)
ଦସବଧି ଗୃପ ହର ସେ ହୋଇଲେ
ଭଗଚ ଯନଙ୍କ ତାପକୁ ଦଳୀଲେ । (୨)
ତମିର ନାସନେ ଆଦିତ୍ୟ ପ୍ରକାଶ ।
ସନ୍ତ ଯନ ମନ ସରୋବର ହଂସ । (୨)
କାଳ ଦର୍ପ ଦଳ ଯନ ମନ ରଞ୍ଜେ
ଯଦୁ କୁଳ କୁମୁଦ ତପନ ବର୍ଗ୍ଗଯେ । (୨)
ନାରକା ଦନୁପ ମଧୁ ଦର୍ପ ଗଞ୍ଜେ
ଦେବକୁ ହରଣ ଗର୍ତ୍ତରେ ବଯେ । (୨)
ଅମଳ ସରୋଯ ନେତ୍ର ଭପୁ ନାସି
ଶ୍ରୀଭୁବନ ସ୍ଥାନ ଶ୍ରୀଭୁବନ ବାସୀ । (୨)
ପଦ୍ମ ଚରଣ ସେବ ଭପୁ ନାସିଲେ
ଅଭୟ ପଞ୍ଜରେ ସରଣ ପଶିଲେ । (୨)(ପଦ ୬୮—୯୨)

୧୯୧—୧୯୨ ଆଜ୍ଞା ପ୍ରମାଣେ ବ୍ରାହ୍ମଣ ଚଳିଗଲ୍ପ
ରୁକ୍ମିଣୀକ ପାଇଁ ସନ୍ଦେଶ କହିଲ୍ପ । (୧)

୨୧୭—୨୧୮ ଯେଉଁ ଚରଣ ପାଣ୍ଡବ ଆଶ୍ରେକରି
କୁରୁସାଗର ଗେଷ୍ପଦ ପ୍ରାପ୍ତ ତରି । (୧,୨)

୨୩୩ - ୨୩୪ ଅଭୟ ପାଦ ପଦ୍ମ ନେତ୍ରେ ଦେଖିବା
ଯମ କାଳ ଦଣ୍ଡ ଭପୁ ଉପେକ୍ଷିବା । (୧,୨)

ପାଦ ପଦ୍ମ ମାର ଗର୍ଭରେ ଭରିବା
ଚତୁର୍ବର୍ଗ ଫଳ ହସ୍ତରେ ଧରିବା । (୧,୨)
ପାଦ ପଦ୍ମ ଗୃହି ଶିରେ ଦେବା କର
ଅଶେଷ ଜନ୍ମର ସର୍ବ ପାପହର । (୧,୨)
ଗଜରାଜ ଯହୁଁ ଜଳରେ ପଶିଲା
ମହା କୁମ୍ଭୀର ସେ ତାହାକୁ ଗ୍ରାସିଲା । (୧,୨)
ଅଭୟ ପାଦ ପଦ୍ମକୁ ସ୍ମରେ ଗଜ
କର ଟେକି ଡାକେ ଧାଇଁ ଦେବରାଜ । (୧,୨)
ଗଜରାଜ ଯହୁଁ ଚରଣ ସୁମରି
ରକ୍ଷାକର ଗଜ କୁମ୍ଭୀର ନିବାରି । (୧)(ପଦ୨୧୨--୨୧୭)

୨୭୧—୨୭୨ ପ୍ରହ୍ଲାଦ ବଶିଷ୍ଠ ପରାଶର
ବିଶ୍ୱାମିତ୍ର କପିଳ ଶୌନକ ଶୌହର । (୫)
ଯଜ୍ଞଯଜ୍ଞ ବଳ ଭରଦ୍ୱାଜ ଆଦି
ଗୌତମ ମୁଦ୍‌ଗଲ ବ୍ୟାସ ତପୋନିଧି । (୫)
ଲୋମଶ ଅଗସ୍ତି ପଉଲସ୍ତ ସ୍ୱଚ୍ଛା
କୌଶିକ ମଙ୍ଗଳ ଦୁର୍ବାସ୍ୟା ଏଦସା । (୫)
ନାରଦ କଶ୍ୟପ ଯେତେ ମୁନିବର
ପୂଜିଲା ଦେଖିଲା ଫଳହୋଏ ତାର । (୫)
ଅଷ୍ଟାଦଶ ଚିହ୍ନ ଚରଣେ ପ୍ରକାଶୀ
ଭଞ୍ଜ ଗୋବିନ୍ଦ ସରଣ ତର୍ଷାଂପଶୀ । (୫)(ପଦ୨୧୨--୨୧୫)

୨୭୨—୨୭୮ ଭଞ୍ଜ ଗୋବିନ୍ଦ ଡ଼ାକେ ଆହେ ଈଶ୍ୱର
ଶରଣ ପଶିଲି ଦେବ ଚକ୍ରଧର । (୧)
ଶରଣ ରକ୍ଷଣ ଦେବ ଗଦାଧର
ଶରଣ ରଖିଲ ନୃପ ବନ୍ଧ ଘର । (୧)
ଚରଣ ସୁଧା ନିଧି ଯେହୁ ପଢ଼ନ୍ତି
ଶ୍ରଦ୍ଧା ଯୁକ୍ତେ ଯେବା ଶ୍ରବଣେ ଶୁଣନ୍ତି । (୧)
ଯେହୁ ଯେଉଁ ବାଞ୍ଛା କରନ୍ତି ମନର
ଅବଶ୍ୟ ତାହା ଦିଅନ୍ତି ଚକ୍ରଧର । (୧)

ଘୋର ସଂସାର ସାଗରୁ ସେ ତରଇ
ଜନ୍ମ ମରଣ ବେନି ଦୁଃଖ ହରଇ । (୧)
ଦୁଃଖ ନାଶନ ବାରେ, ଦୟା କରିବା
ଦ୍ରୋହୀ ଗୋବିନ୍ଦର ଦୋଷ ନ ଧରିବା (୧)
ପାଦ ପଦ୍ମେ ଦୋଷ କଲା ଯେ କିରାତ
ମୃଗ ବୋଲି ପାଦେ କଲା ଶରଘାତ । (୧)
ଏଡ଼େ ଦ୍ରୋହିକି ଏମନ୍ତ ଗତି ଦେଲ
ନିଦଶ ଦେଖିଲେ ବୈକୁଣ୍ଠକୁ ନେଲ । (୧)
ଯୁଦ୍ଧ କରିଣ ସ୍ୱାମି ଦ୍ରୋହୀ ହୋଇଲା
ଜମ୍ବୁବନ୍ତି ତାତ ମନେ ବାଞ୍ଛା କଲା । (୧)
ଏଡ଼େ ଦ୍ରୋହ ଚିତ୍ତେ ନଧର ଗୋସାଇଁ
ଶ୍ରୀବତ୍ସ ବ୍ରାହ୍ମଣ ଦ୍ରୋହ ଅଛ ବହି । (୧)
ପାଦ ପଦ୍ମ ଚିନ୍ତା କଲା ଯେ ପିଙ୍ଗଳା
କେ ଟି ଦୁଷ୍କୃତ ତାହାର ଯେ ଗଲା । (୧)
ଏଡ଼େ ଲୋକକୁ ଯେ ଏଡ଼େ ସ୍ଥାନ ଦିଅ
ଭୟ ଭକତି ଲୋକଙ୍କ ଠାରେ ସ୍ନେହ । (୧)
ଅଭୟ ଶାଳ ରାବଣ ହିରଣାକ୍ଷ
ଯାବତ ଦ୍ରୋହ କରି ସେ ହେଲେ ମୋକ୍ଷ । (୧)
ଗୋପୀଏ ପୂତନା କୋଳରେ ଧଇଲେ
ଭାବିଲେ ପୂତନା ଗୋପୀ ଦ୍ରୋହ କଲେ । (୧)
ଦ୍ରୋହୀ ଭାବିବ ଯେଉଁ ପାଦ ଆଶ୍ରୟେ
ମହା ପ୍ରଭୁ ମୋତେ କରିବା ନିର୍ଭୟେ । (୧)
ପାଦ ପଦ୍ମ ଶୋଭା ବର୍ଣ୍ଣିବ କେ ଅବା
ବ୍ରହ୍ମା ଶଙ୍କର ଯେ ବାସୁକୀ ମଘବା । (୧)
ଅଷ୍ଟ ଦଶ ଚିହ୍ନ ଯେ ପାଦେ ପ୍ରକାଶି
ଭଞ୍ଜ ଗୋବିନ୍ଦ ତହିଁ ଶରଣ ପଶି । (୧)

ଯେହୁ ଯେହୁ ଭାବ କରନ୍ତି ସଫଳ
ଅଟେ ପାଦପଦ୍ମ ସେବିବାର ଫଳ । (୧)

ଅଭେ ପାଦ ପଦ୍ମେ ନମେ ଯାର ମଥା
ସ୍ୱର୍ଗ ସ୍ଥାନ ତାକୁ କେତେ ଶସ୍ତ କଥା । (୧)(ପଦ୨୪୪-୨୬୨)

୨୮୫—୨୮୬ ଅଭେ ପାଦ ପଦ୍ମ ସ୍ମରଣ କରନ୍ତି
ବୈଷ୍ଣବ ଦର୍ଶନ ଫଳ ସେ ଲଭନ୍ତି । (୧,୫)
ଚୈତନ୍ୟାବତାରେ ପ୍ରେମ ଭକ୍ତି ଦେଇ
ଗୌର ହରି ରୂପ ଭକତେ ଦେଖାଇ (୧,୫)
ନିତ୍ୟାନନ୍ଦ ରୂପ ଆପଣେ ପ୍ରକାଶି
ମହାମନ୍ତ୍ର ଦେଇ ଭକତକୁ ତୋଷି । (୧,୫)
ଦାମୋଦର ରୂପ ଆପଣେ ହୋଇଲେ
ଅଧମ ତାରି ମହିମା ପ୍ରକାଶିଲେ । (୧,୫)
ରାମାନନ୍ଦ ରୂପ ଆପଣେ ପ୍ରକାଶି
ସଙ୍ଗ କରି ପ୍ରଭୁ ଗୌରଙ୍ଗ ସନ୍ନ୍ୟାସୀ । (୧,୫)
ଶ୍ରୀ ବାସ ପଣ୍ଡିତ ଆଦି ଭକ୍ତ ରୂପେ
ସନାତନ ରୂପେ ମହାଲକ୍ଷ୍ମୀ ରୂପେ । (୧,୫)
ଗୋପାଳ ଭଟ୍ଟ ଆପଣେ ହରି ହେଲେ
ଏକ ନାଥ ରୂପ ଆପଣେ ଧଇଲେ । (୧,୫)
କର୍ଣ୍ଣପୁର କବିରାଜ ଶ୍ରୀ ଗୋସାଇଁ
ଶ୍ରୀ ବାସ ରୂପରେ ଭକତି ଦେଖାଇ । (୧,୫)
କବିରାଜ କୃଷ୍ଣ ସଂଜାତ ଅନନ୍ତ (୧) (ପଦ ୨୮୮--୨୮୯)
ଚୈତନ୍ୟ ଚରଣାମୃତ ବଖାଣନ୍ତି । (୫) (ପଦ ୨୩୬-୨୪୪)

୨୮୯—୨୯୦ ସଂସାର ତାପେ ଶ୍ୱେତଚ୍ଛତ୍ର ଚାମର
ବୁଦ୍ଧି ଅନ୍ଧେ ନ ପଶିଲା ପାମର । (୨,୫)
ନିତ୍ୟ ମୀମାଂସା ବିଶାଖା ପ୍ରାତଃକାଳ
ବୈଶାଖ ବେଦାନ୍ତ ଏହୁ ଆଦି ମୂଳ । (୨,୫)

୨୯୫—୨୯୬ ଯେଉଁ ପାଦପଦ୍ମ ମହିମା ଅନନ୍ତ
ନିଗମ ଗମି ନ ପାରନ୍ତି ତଦନ୍ତ । (୨,୫)
ଅଭୟ ପାଦପଦ୍ମେ ସମେ ଧର୍ମ୍ମ ନାହିଁ
ଅଭୟ ପାଦପଦ୍ମେ ସମେ କର୍ମ୍ମ କାହିଁ । (୨,୫)

ଅଭୟ ପାଦପଦ୍ମେ ପରମ ସମ୍ପତ୍ତି
ଅଭୟ ପାଦପଦ୍ମେ ସମ ନାସ୍ତି ଗତି । (୨,୪)
ଅଭୟ ପାଦପଦ୍ମେ ସର୍ବ ଧର୍ମ ଋଷି
ଅଭୟ ପାଦପଦେ ଅମୃତ ବଳାସି । (୨)(ପଦ ୨୦୪--୨୦୮)
(୪)(ପଦ ୨୯୪-୨୯୭)

UUOL 495 ଯେତୁ ଯେତୁ ବାଞ୍ଛି ମନରେ ବସୁର
ପୋଥି ଶେଷରେ ଅବଶ୍ୟ ଦାତା ଅପୂର୍ଣ୍ଣ ହରେ ହରି ।
ସାତବାର ପଦର ତଥି ପଢ଼ଇ ଯେତୁ
ଅକାଳ ମୃତ୍ୟୁ ଭବଭୟ ନାହିଁ··· ।
ସଂଧ୍ୟାକାଳେ ପ୍ରାତକାଳେ ତନ୍ତ୍ରୀ ଯେଉଁ ଯାଣି
ମହା ଘୋର ସଙ୍କଟୁ ରଖନ୍ତି ଚକ୍ରପାଣି ।
ଚରଣ ସୁଧାନିଧି ପଢ଼ନ୍ତି ଯେତୁ
ତାର ଭୁବନୁ ଲକ୍ଷ୍ମୀ ତ ନ ଗୁଡ଼ଇ ଆଜ !
ଦୂଖ ନାଶନ ଦୟା ମୋତେ କରିବା
ଦ୍ରୋଣ୍ଣି ଗୋବନ୍ଦର ଦୋସ ନ ଧରିବା ।(ପଧ ୨୩୭-୨୪୨)

(୨) ଓ (୪) ପାଦ ଯେ ମାଇଲା ଶ୍ରୀବସ୍ତ୍ର ବ୍ରାହ୍ମଣ
ପୋଥି ଶେଷରେ ଭକ୍ତ କଭ ହୃଦେ ବସିଲ ଆପଣ ।
ପତିତପାବନ ଅଭୟ ଚରଣ
ପ୍ରଳୟ ପଡ଼ିଲେ ପସିବା ସରଣ ।
ଚରଣ ସୁଧାନିଧି ଯେତୁ ପଢ଼ନ୍ତି
ସ୍ରଧାଯୁକ୍ତେ ଯେତୁ ସ୍ରବଣେ ଶୁଣନ୍ତି ।
ଚରଣ ସୁଧାନିଧି ଯେତୁ ଶୁଣନ୍ତି
ଜନ୍ମ ମରଣ ବେନ ଦୂଃଖ ହରନ୍ତି ।
ଯେତୁ ଯେତୁ ବାଞ୍ଛା କରନ୍ତି ବସୁର (ପଦ ୩୨୭,
ଅବଶ୍ୟ ତାଙ୍କ ପୁରତ ହରେ ହରି । ୩୨୮-- ୩୩୧)

(୪—OSM. ଘୋର ସଂସାର ସାଗରୁ ସେ ତରନ୍ତି
OL .102) ଜନ୍ମ ମରଣ ବେମା ଦୁଃଖ ହରନ୍ତି ।
ପୋଥି ଶେଷରେ ଦୁଃଖ ନାସନ ମୋତେ ଦୟା କରିବା
ଦ୍ରୋଣ୍ଣି ଗୋବନ୍ଦର ଦୋସ ନ ଧରିବା ।

ଶ୍ରୀ ନୀଳକନ୍ଦର ବଜେ ଦେବଦ୍ୱାର
ସଙ୍ଗତେ ସାରଦା ଛନ୍ତ୍ର ସଂସ ଧର ।

ପ୍ରଯାପତି ଯେନ ଚତୁର୍ଧା ସ୍ୱରୂପ
ଅଖିଳ ନାଥ ଯାହାର ଯେଉଁ ଗୋପ୍ୟ ।

ଖେସବଁର ସିନ୍ଧୁ ଉତ୍ତର ତୀରର
ବିଯେ ବିସ୍ୱନାଥ ଯେ ସଙ୍ଗନାଭିର ।

ପର ଅପର ପୁରି ଯେଉଁ ପୁରୁଷ
ପରମାନନ୍ଦ ସିଏ ତାରି ପ୍ରକାଶ ।

ପତିତପାବନ ଯେ ଅଭୟ ଚରଣ
ପ୍ରଳୟ ପଡ଼ିଲେ ଯେ ପସିବା ସରଣ ।

ଭଞ୍ଜ ଗୋବିନ୍ଦଙ୍କ ବିପତ୍ତି ପଡ଼ିଲା
ପରମାନନ୍ଦ ଶ୍ରୀ ଚରଣେ ପଡ଼ିଲା ।

ଫିଟିଲକ ଦୁର୍ଗତି ସେବି ଶ୍ରୀ ଚରଣ
ଝିଡ଼ି ଲୋହ ପ ଶ ପଡ଼ିଲା ତକ୍ଷଣ ।

ପାପିତା ଦୁଷ୍ଟା ଦେବେ ବିଦୁରିଗଲେ
ଭୟ ବଦନ ଯେ କମ୍ପିଲ ଥରହର ।

ଅଭୟ ପାଦପଦ୍ମେ ଲୋଚନେ ଦେଖିଲା
କାହିଁ ଦବନ ଯେ କେତେ ତପ୍ପକଲା ।

ରାଜ ପାହିଲେ ଯେହ୍ନୁ କରି କଲା ବନ୍ଦ
ବୋଇଲା ଗୁଣ୍ଡଦଅ ରାଜା ଭଞ୍ଜ ଗୋବିନ୍ଦ ।

ପ୍ରଭୁ ଦିବ୍ୟ ରୂପ ଦର୍ଶନ ମାତ୍ରକେ
ଦସ୍ୟୁ ବସିଲା ଯେ ପାମର ଦୁଷ୍ଟ ଲୋକେ ।

ଫିଟିଲା ଦୁଶ ପାଇଲା ସଦୟ
ଅଭୟ ପାଦପଦ୍ମେ ନମିଲା ମା ଭୟେ ।

ଅଭୟ ପାଦପଦ୍ମେ ସର୍ବ ଭୟ ହରେ
ସରଣ ଭଞ୍ଜ ଗୋବିନ୍ଦୀ ମାରନ୍ତରେ । (ପଦ ୩୩୨--୩୪୬

୪୮୬—୪୮୭ ହୀନ ଗୋବନ୍ଦ ତା କ ଅବା କହିବ ।
ଦୟା ସାଗର ହରି ରକ୍ଷା କରିବ । (୧)
ସ୍ତୁତି କରି ରାଜା ମଙ୍ଗନେ ରହିଲା
ରଖ ହରି ବୋଲି ଶରଣ ପଶିଲା । (୧) (ପଦ ୪୮୫)

୬୨୨—୬୨୩ ଯେତେ ବଡ଼ ହେଲେ ହୋଇବ ସେ ହେଉ
ପଥ ଛାଡ଼ିଗଲେ ଭିତରକୁ ଯାଉ । (୧)

୭୪୨—୭୪୩ କବାଟ ଫେଡ଼ିଣ ଦେଖନ୍ତି ଯେ ଯାଇ
ରାଜା ତ ଆମ୍ଭର ଘରେଛନ୍ତି ଶୋଇ । (୧)

(୨) (୬) ପୋଥି ଶେଷରେ
ବନ୍ଦୀର ସ୍ଥାନରୁ ସେ ହୋଇଣ ଯିବେ ପାର
ଦେହାନ୍ତେ ବସିବେ ଯାଇ ବଇକୁଣ୍ଠପୁର ।
ଅନ୍ତର୍ଯ୍ୟାମୀ ନାଥ ତହୁଁ ଅନ୍ତର ହୋଇଲେ
ବଇକୁଣ୍ଠ ନାଥ ଯେ ବଇକୁଣ୍ଠେ ବିଜେ କଲେ ।
ନୃପ ଭଞ୍ଜ ଗୋବିନ୍ଦଙ୍କ ଦୟା ପ୍ରଭୁ କରି (୨)(ପଦ ୭୪୮-୭୫୦)
ଅନ୍ତର ହୋଇଲେ ତହୁଁ ପ୍ରଭୁ ଦଇତ୍ୟାରି ।(୬)(ପଦ ୮୨୫-୮୨୮

(୧) ପୁସ୍ତକ ଶେଷରେ
ଇତି ଶ୍ରୀ ଚରଣ ସୁଧାନିଧି ପୂର୍ଣ୍ଣ (୧) (ପଦ ୮୦୩)
ଆଠଶ ସପ୍ତ ପଦରେ ଏହୁ ନିର୍ଣ୍ଣ । ବଦଳରେ ୮୦୭ ଅଛି)

———

# ସଂଶୋଧନ

[ ଅକାର ଗ୍ରନ୍ଥକ କେତେକ ସ୍ଥଳରେ ନ ବସୁ ଥିବାହେତୁ ସେହି ସ୍ଥଳଗୁଡ଼ିକରେ ଖାଲିସ୍ଥାନ ରହି ଯାଇଛି । ଅକାର ମିଶାଇ ପଢ଼ିବାକୁ ଅନୁରୋଧ । ]

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| | | ମୁଖବନ୍ଧ | |
| ଦୁଇ | ୨୦ | ୨୧୦ ଠାରୁ | ୨୦୪ ଠାରୁ |
| ଚାରି | ୯ | O L. I | O. L 103 |
| ନଅ | ୧୮ | ଭକ୍ତି ପ୍ରଭିବ ଭକ୍ତ | ଭକ୍ତି ପ୍ରଭବ ଭକ୍ତ |
| | ୨୦ | ହସଯୋଗ | ହଠଯୋଗ |
| ଦଶ | ୨୩ | ଯୁକ୍ତି | ଯୁକ୍ତି |
| | ୨୪ | ପୁରୁଷୋତ୍ତମ | ପୁରୁଷୋତ୍ତମ |
| ତେର | ୨୩ | ସଂସ୍କୃତ | ସଂସ୍କୃତ |
| ଷୋହଳ | ୫ | ପଦ୍ଧତି | ପଦ୍ଧତି |
| | ୧୦ | ଶ୍ରୁତ | ଶ୍ରୁତ |
| | ୨୩ | ୭୩୧-୪୩୮ | ୬୩୧-୬୩୮ |
| ସତର | ୨୯ | ୪୨୩-୮୩୩ | ୪୯୩-୪୯୭ |
| ଅଠର | ୩ | ମୂଳ | ମୂଳ |
| | ୧୩ | ମଧୁସୂଦନ | ମଧୁସୂଦନ |
| ଊଣେଇଶି | ୧ | ନବ | କବ |
| କୋଡ଼ିଏ | ୫ | ହୋଉଥିଲେହେଁ | ହୋଇଥିଲେହେଁ |
| | ୧୪ | ଭକ୍ତିମୂଳକ | ଭକ୍ତିମୂଳକ |
| | ୧୫ | ଭକ୍ତିଯୁକ୍ତ | ଭକ୍ତିଯୁକ୍ତ |
| | ୨୨ | ସମନ୍ୱୟ | ସମନ୍ୱୟ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ଚଉଶି | ୮,୯ | ମଧୁସୁଦନ | ମଧୁସୂଦନ |
| ପଚଶି | ୨୦ | ଶୁନ୍ୟପୁର | ଶୂନ୍ୟପୁର |
| ଛୟଶି | ୨୦ | ଅନ୍ତହୃଦୟରୁ | ଅନ୍ତର୍ହୃଦୟରୁ |
| ସତେଇଶି ଶେଷ | | (ନାହିଁ) | ଟିପ୍ପଣୀ : 'ଦିବ୍ୟ ଦେହ ବୋଲି' ସମ୍ପାଦକ : ଡଃ କୃଷ୍ଣଚରଣ ସାହୁ |
| ଅଠେଇଶି | ୬ | ମଧ୍ୟ | ମିଶିଲେ |
| | ୧୧ | ମୁକ୍ତା | ମୁକ୍ତତ |
| ବଉଶି | ୧୨ | ଦୃତ୍ତିଳ | ବୃତ୍ତିଳ |

କାବ୍ୟ

| ପଦ ସଂଖ୍ୟା | ଅଶୁଦ୍ଧ | ଶୁଦ୍ଧ |
|---|---|---|
| ୨୩ | ଚରଣେ | ଚଟଣୀ |
| ୯୦ | ଲଙ୍ଗିଲ | ଉଙ୍ଗିଲ |
| ୩୮୬ | ଅକାଳରେ | ଅବଳାରେ |
| ୫୬୬ | ଯୋଡ଼ି | ଯୋଡ଼ |
| ୫୭୬ | ଅଛି | (ବାଦ ଦିଆଯିବ) |